# କସ୍ତୁରୀ ମୃଗ

ଏକାଙ୍କିକା-ସଞ୍ଚୟନ

—ଶ୍ରଦ୍ଧାକର ସୂପକାର—

ପ୍ରକାଶକ
ସାରସ୍ୱତ ପୁସ୍ତକ ଭଣ୍ଡାର,
ଗୋଲ୍‌ବଜାର, ସମ୍ବଲପୁର

ପ୍ରଥମ ସଂସ୍କରଣ
୧୦୦୦
୧୯୬୪ – ଅକ୍‌ଟୋବର୍‌

ମୁଦ୍ରାକର—
ଶ୍ରୀ ଅକ୍ଷୟକୁମାର ଦାଶ
ବିଶ୍ୱଭାରତୀ ପ୍ରେସ
ମୋଦିପଡ଼ା, ସମ୍ବଲପୁର

ମୂଲ୍ୟ — ୨ ଟଙ୍କା

# ଭୂମିକା

ଏ ମୋର ଲେଖା ଚେଉଦଟି ଏକାଙ୍କିକା ଏ ପୁସ୍ତକରେ ପ୍ରକାଶିତ ହେଉଛି । ଏଥି ମଧ୍ୟରୁ 'କସ୍ତୁରୀ ମୃଗ' ଗଙ୍ଗାଧର ଶତବାର୍ଷିକୀ ଉପଲକ୍ଷେ ପ୍ରକାଶିତ 'ଗଙ୍ଗାଧର ସ୍ମରଣିକା'ରେ ସ୍ଥାନ ପାଇଥିଲା । 'ଦେବତାଙ୍କର ତୃଷ୍ଣା' 'ସମାଜ' ବାର୍ଷିକ ସଂଖ୍ୟାରେ 'କବର ମୃତ୍ୟୁ' ଓ 'ଚନ୍ଦ୍ରଲୋକରେ ଆଧୁନିକ ସଭ୍ୟତା' 'ଆସନ୍ତା କାଲି'ରେ 'ଆରୁଣିର ସ୍ୱପ୍ନ' 'ସମାବେଶ'ରେ ଓ 'କାମଦ୍ରାଜ ନାରଦ ଯୋଜନା' 'ଉତ୍କଳ'ରେ ପ୍ରକାଶିତ ହୋଇଥିଲା । ଉକ୍ତ ପତ୍ର ପତ୍ରିକାମାନଙ୍କର ସମ୍ପାଦକମାନେ ଏ ଏକାଙ୍କିକାମାନ ପୁସ୍ତକାକାରରେ ପ୍ରକାଶ କରିବାକୁ ଅନୁମତି ଦେଇଥିବାରୁ ମୁଁ ସେମାନଙ୍କଠାରେ ଋଣୀ ।

ଓଡ଼ିଆ ସାହିତ୍ୟରେ ଉଚ୍ଚକୋଟିର ବା ଅନ୍ୟ ଉପନ୍ୟାସ, ଗଳ୍ପ, ନାଟକ ଓ କବିତା ସଂଗ୍ରହଠାରୁ ମଧ୍ୟ ଏକାଙ୍କିକା ସଂଗ୍ରହ ସଂଖ୍ୟାରେ ଊଣା । କିନ୍ତୁ ସଙ୍ଗୀତ, ନୃତ୍ୟ ଓ ଆବୃତ୍ତି ପରି ଏକାଙ୍କିକା ଆଧୁନିକ ସଂସ୍କୃତିର ଏକ ମୁଖ୍ୟ ଅଙ୍ଗ । ତେଣୁ ଏ ପ୍ରକାର ପୁସ୍ତକର ଆବଶ୍ୟକତା ଓ ଉପାଦେୟତା ବିଷୟରେ ଆଶା ରଖି ଏ ପୁସ୍ତକ ପ୍ରକାଶ କରୁଛି । ସାହିତ୍ୟପ୍ରେମୀ ସୁଧୀବୃନ୍ଦ ଓ କଳାକାର-ଗଣ ଏ ପୁସ୍ତକରୁ କିଛି ଆନନ୍ଦ ପାଇଲେ ମୋର ସମସ୍ତ ଶ୍ରମ ସାର୍ଥକ ହେବ ।

ବିନୀତ

**ଲେଖକ**

# ସୂଚୀପତ୍ର





# କସ୍ତୁରୀ ମୃଗ

(ଯବନିକା ଉତ୍ତୋଳନ ପୂର୍ବରୁ ପର୍ଦ୍ଦାର ଅନ୍ତରାଳରୁ)

"ସମ୍ବଲପୁର ଇତିହାସର ଅନ୍ଧକାରତମ କାଳରେ ଆଶାର କ୍ଷୀଣ ଆଲୋକ ରୂପେ ଦେଖା ଦେଇ ଯେଉଁ କାବ୍ୟତାରା ଦିନେ ସମଗ୍ର ଉତ୍କଳକୁ ଆଲୋକିତ କରିଥିଲେ, ତାଙ୍କର 'ଉଦୟ ପରେ ଶତାବ୍ଦୀ ବିତିଯାଇଛି । ବୀର ସୁରେନ୍ଦ୍ର ସାଏଙ୍କ ଶୋଣିତରେ ଶ୍ରାବଣ ଆସାର ରୂପ ଲୋତକ ବିସର୍ଜନ କରୁଥିବା ଜନନୀର କୋଳକୁ ଆସି ଯେଉଁ ଶିଶୁ ନିଜର ହାସ୍ୟରେ ଜନନୀକୁ ଆତ୍ମବିସ୍ମୃତା କରିଥିଲା, ସେହି ଶିଶୁର ସ୍ମୃତିକୁ ଆମେ ପୂଜା କରୁଛୁ । ଯେଉଁ ଗଙ୍ଗାଧରଙ୍କ ମସ୍ତକରୁ କାବ୍ୟର ପୁଣ୍ୟ ସଲିଳ, ପତିତପାବନୀ ଗଙ୍ଗା ନିଃସୃତ ହୋଇ ଉତ୍କଳର କାବ୍ୟ ଜଗତକୁ ସୁଧାରସରେ ସିଞ୍ଚିତ ଓ ରମଣୀୟ କରିଅଛି, ଦାରିଦ୍ର୍ୟର ହଳାହଳ ପାନ କରି ଯେଉଁ ନୀଳକଣ୍ଠ ଉତ୍କଳ ମାତୃଭୂମିକୁ ପ୍ରକୃତିର ଅମୃତ ରସ ପିଆଇଛନ୍ତି, ବିନୟ ରୂପକ ବିଭୂତି ଯାହାଙ୍କର ଜୀବନକୁ ବିଭୂଷିତ କରିଥିଲା; ସତ୍ୟ, ଶିବ ଓ ସୁନ୍ଦର—ତିନୋଟି ନୟନରେ ଯେଉଁ ତ୍ରିଲୋଚନ ଉତ୍କଳ ପ୍ରକୃତିକୁ ଦେଖୁଥିଲେ, ନୈରାଶ୍ୟ ଓ ଉପେକ୍ଷାର ଶ୍ମଶାନବାସୀ ସେହି କବିଙ୍କୁ ତାଙ୍କର ଜନ୍ମ ଶତବାର୍ଷିକୀ ଉପଲକ୍ଷେ ଆମର ଭକ୍ତି ପୁଷ୍ପାଞ୍ଜଳି ଅର୍ପଣ କରୁଛୁ ।

"ହେ ବରେଣ୍ୟ କବି, ଯେଉଁ ଉତ୍କଳ ଲକ୍ଷ୍ମୀଙ୍କର ସ୍ତବ ପାଠରେ ତୁମେ ଦିନେ ଉତ୍କଳର ସାହିତ୍ୟାକାଶକୁ ମନ୍ଦ୍ରିତ କରିଥିଲ, ସେହି ଉତ୍କଳଲକ୍ଷ୍ମୀ ଆଜି ତୁମର ସ୍ୱପ୍ନକୁ ସଫଳପ୍ରାୟ କରିଛନ୍ତି । ତୁମେ ଆଜି ନାହିଁ, ଉତ୍କଳ ଆଜି ତୁମକୁ ଖୋଜୁଛି ।"

"ଯେଉଁ ଭାରତୀଙ୍କ ଭାବନା ଦିନେ ତୁମର ଲେଖନୀରେ ହାହାକାର ରୂପେ ଫୁଟିଥିଲା, ସେହି ଭାରତୀ ଆଜି ସ୍ୱାଧୀନା, ତାଙ୍କର ମୁହଁର ହସ ତୁମେ ଦେଖିପାରିଲ ନାହିଁ ।"

"ହେ ଉତ୍କଳର ରବିବର୍ମା, କାନନବାସୀ-ମୁନି-ମନ-ମୋହନୀ ସୂକ୍ଷ୍ମକୁଟିଳ-ନୀଳ-ବେଣୀଶୋଭିନୀ ତପୋବନକୁ ତୁମେ ଯେପରି ଚିତ୍ରିତ କରିଥିଲ, ସେ ଠିକ୍ ସେହିପରି ରହିଯାଏ । ମନ୍ଦାନିଳ-କମ୍ପିତ ସେହି ଯୌବନ ସମୃଦ୍ଧ ବୃକ୍ଷଲତା, ଆତପ ତାପିତ ତନୁ ତାପ ବିଭଞ୍ଜନ ପ୍ରଧାନପାଦ ପ୍ରପାତ, ମଞ୍ଜୁ କୁଞ୍ଜମୟ ବେଦବ୍ୟାସ ଗିରି, ସ୍ୱଚ୍ଛନୀଳଜଳତଟ-ବଟଚ୍ଛାୟା ମନୋରମ ପାପକ୍ଷୟ ଘାଟ, ଶ୍ୱେତ-ଶତଦଳ ମାଳିନୀ ସରସୀତୀର ନିବାସୀ ସୋମନାଥ ଏବେ ସୁଦ୍ଧା ତୁମର ଚିତ୍ରପରି ଶୋଭାପାଉଛନ୍ତି ।"

"ହେ ଅମୃତ ସାଗର ବିନ୍ଦୁ, ଆଜି ତୁମେ କାଳର ଅନନ୍ତ ସାଗରେ ଲୀନ; ଯେଉଁଦିନ ତୁମେ ଶିଶିର ବିନ୍ଦୁରୂପେ କାବ୍ୟା-ଲୋକରେ ଜ୍ୟୋତିଷ୍ମାନ୍ ଥିଲ, ଆମେ ସେତେବେଳେ ତାକୁ ସାମାନ୍ୟ ଶିଶିର ବିନ୍ଦୁ ମଣୁଥିଲୁଁ, କିନ୍ତୁ ଏବେ ସୁଦ୍ଧା ଆମେ ସେହି ଶିଶିର ବିନ୍ଦୁର ହୀରକମନ୍ଦୀ ଆଲୋକ ପାଉଛୁଁ ।"

"ତୁମେ ଯେତେବେଳେ ଆମକୁ ମଧୁମୟ ପ୍ରଚଷ୍ଟରେ ବଣକୁ ଦେଖାଇବାକୁ ଚାହୁଁଥିଲ, ସେତେବେଳେ ଆମେ ଥିଲୁଁ ଆନମନା ।"

"ଯେତେବେଳେ ତୁମେ କସ୍ତୁରୀ ମୃଗ ପରି ପ୍ରକୃତିର କୋଳରେ ବିଚରଣ କରୁଥିଲ, ସେତେବେଳେ ଆମେ ତୁମର ପ୍ରତିଭାର ନିର୍ଯ୍ୟାସର ଗନ୍ଧ ସୁଙ୍ଘି ପାଇବାକୁ ଚେଷ୍ଟା କରି ନ ଥିଲୁଁ, ତୁମେ ମଧ୍ୟ ସେ ସୁରଭି ଆଘ୍ରାଣ କରି ପାରିଥିଲ କି ନାହିଁ, କିଏ ଜାଣେ ?"

ଆମର ଏକ ଅଶେଷ ସୌଭାଗ୍ୟ ପୂର୍ଣ୍ଣ ମୁହୂର୍ତ୍ତର ଶତବର୍ଷ ପରେ ଆଜ ମଧୁ ବାତ ସଙ୍ଗେ ସେହି କସ୍ତୁରୀର ସୁରଭି ଖେଳି ବୁଲୁଛି । ମଧୁ ସିନ୍ଧୁର ଷରଣରେ ତୁମର କାବ୍ୟର ପ୍ରତିନାଦ ଶୁଣାଯାଉଛି, ମଧୁର ନକ୍ତ ଓ ଉଷସୀର ଆଲୋକରେ ତୁମର କାବ୍ୟର ବର୍ଣ୍ଣ ବୈଭବ ପ୍ରସ୍ଫୁଟିତ ହେଉଛି ।"

ଏହି ପୁଣ୍ୟ ଅବସରରେ ତୁମର ଅମର ଆତ୍ମା ପ୍ରତି ଅର୍ପଣ କରୁଛି ଏ ଜାତିର ଏକ ବିନୀତ ପ୍ରଣତି:—ଆଜକୁ ଏକାବନ ବର୍ଷ ପୂର୍ବର ଭବମାଦ୍ଧ ୧୯୨୮ ସାଲ ଶ୍ରାବଣ ପୂର୍ଣ୍ଣମୀ ଏକ ବର୍ଷା ସ୍ନାତ ସାୟଂକାଳରେ ସମ୍ବଲପୁର ସହରର ଏକ ଅଖ୍ୟାତ କ୍ଷୁଦ୍ର କୁଟୀରର ଦୃଶ୍ୟ—

# କସ୍ତୁରୀ ମୃଗ

ପ୍ରଚ୍ଛଦ ପଟ ଉଠିଲା ସମୟରେ ଦେଖାଯାଏ ଏକ ସାଧାରଣ କୋଠରୀ । ତଳେ ପଡ଼ି ଯାଇଥିବା ମସିଣା ଉପରେ ଏକ ଷ୍ଟ୍ରେଟ ବାକ୍ସର ସେ ପାଖରେ ଶ୍ରୀ ଗଙ୍ଗାଧର ମେହେର ବସିଛନ୍ତି । ପରିଧାନ ଧୋତି ଓ ଗେଞ୍ଜି । ଆଖିରେ ଚଶମା । ମୁଣ୍ଡର ବାଳ ଅନେକ ପାଚିଗଲଣି । ମୁହଁରେ ବଡ଼ ନିଶ । ତାଙ୍କର ବାଁ ପଟେ ବସିଛନ୍ତି ଜଣେ ନବଯୁବତୀ ଓ ଜଣେ ପ୍ରୌଢ଼ ଲୋକ ଓ ଡାହାଣ ପଟେ ବସିଛନ୍ତି ଜଣେ ଯୁବକ । ଶ୍ରୀ ଗଙ୍ଗାଧର ମେହେର ଗୋଟିଏ ଦଲିଲ ପଢ଼ିବାରେ ଲଗିଛନ୍ତି:—

"ଏଣୁ ଖୁସି ରାଜିରେ କାହାର ବିନା ପ୍ରବର୍ତ୍ତନାରେ ବିନା ମାଦକଦ୍ରବ୍ୟ ସେବନରେ ଏକରାରନାମା ଲେଖିଦେଲୁଁ ଯେ ଦରକାର ବେଳେ କାମଁରେ ଆସିବ ।"

ବୁଝିଲ, (ଯୁବକ ପ୍ରତି ଲକ୍ଷ୍ୟକରି) ଲେଖା ଠିକ୍ ଅଛି ତ ? ଦୁହେଁ ମାଇଟି ଅଣ୍ଡ୍ରା ପଡ଼ି ରହି କରି ରହିବ ।" (ଯୁବତୀ ପ୍ରତି ଲକ୍ଷ୍ୟ କରି) ଆଉର୍ ତୁମେ ବର୍‌ଟିକେ ମାନିକରି ଚଲ୍‌ବ ।"

• ଯୁବକ ଯୁବତୀ ଦୁହେଁ ସମ୍ମତି ଜ୍ଞାପନ କରି ମୁଣ୍ଡ ଟୁଙ୍ଗାଇଲେ ।

ଗଙ୍ଗାଧର – (ଯୁବକକୁ) କାଗଜ୍‌ଥି (ରେ) ଦସ୍‌କତ୍ ଦିଅ ।

ଯୁବକ —(ଦସ୍ତଖତ କରୁଁ କରୁଁ) ଶଶୁର୍ ଘରେ ଘର୍ ଜୁଏଁ (ଜୋଆଁଇ) ହେଇ କରି ରହିବି । ଠିକ୍ କଥା । ଯେ ମତେ

ଠିକ୍ ଆଦର୍ କରି ରଖିବେ ବଲି ମୋର୍ ଶଶୁର୍ ଭ ଖଣ୍ଡେ ଲେଖି ଦେଇଥିଲେ ଭଲ୍ ହେଇଥାଏନ୍ତା ।

ଗଙ୍ଗାଧର—ଆରେ ବାବୁ । ଶଶୁର୍ ଘରେ ରହିବାର୍ ଟା କେତ୍ତେ ଭାଗ୍ୟ, କେତ୍ତେ ସୁଖ, କାଏଁ ଜାନିଛ । ନିଜେ ମହାଦେବ ବାବା ଦେଖ ଶଶୁର୍ ଘରେ ଆରାମ୍‌ସେ ରହିଛନ୍ । କୃଷ୍ଣୁ ଭଗବାନ୍ ଶଶୁର୍ ଘରେ ସବୁଦିନର୍ କୁନୁଆଁ । ଆରାମ୍‌ରେ ଶୁଇଛନ୍ । ତୁମର୍ ଶଶ୍ରର୍ (ଶ୍ୱଶୁରଙ୍କ) ତ ଗୁଟେ ବଲି ଝିଅ । ଯ’ ତୁମେ ପୁଅ ହେଇକରି ତାକର୍ ଜମିବାଡ଼ି ସମ୍ଭାଲ୍‌ବ । ଜେତେ ଦିନର୍ ଇ ଦୁନିଆଁ । ପଡ଼ି ରହି କରି ରହ । ଶଶୁର୍‌କେ ବାପ୍ ବଲି ମାନ । ଯ’ (କନ୍ୟା ପିତାଙ୍କୁ ଦେଖିଲାକ୍ଷଣି ଦେଲେ) ତନିଜଣ ଯାକ ଉଠି ଗଙ୍ଗାଧରଙ୍କୁ ‘ଜୁହାର୍ ଜୁହାର’ କହି ବିଦାୟ ନେଲେ ।

ଗଙ୍ଗାଧର—ଶ୍ୱଶୁରଗୃହନିବାସଃ ସ୍ୱର୍ଗତୁଲ୍ୟୋ ନରାଣାମ୍ ।

( ଯବନିକାର ଅନ୍ତରାଳକୁ ଲକ୍ଷ୍ୟ କରି )

ଏ ବୈନିକା, ଆଗୋ ବୈନିକା

(ଗୋଟିଏ ପଙ୍ଖି ଧରି କବିପତ୍ନୀ ଚମ୍ପାବତୀ ଦେବୀଙ୍କର ପ୍ରବେଶ ବୟସ ପ୍ରାପ୍ତ ତରୁଣ ପାଖାପାଖି । ଖଣ୍ଡିଏ ସମ୍ବଲପୁରୀ ଶାଢ଼ୀ ପିନ୍ଧିଛନ୍ତି) ।

ଚମ୍ପାବତୀ—ଏବେ କିଅ । ପଙ୍ଖି କାଣା କର୍‌ବ ?

ଗଙ୍ଗାଧର— (ଆଶ୍ଚର୍ଯ୍ୟ ହୋଇ) ପଙ୍ଖି ? ମୁଇଁ ପଙ୍ଖି ମାଗ୍‌ଲି ଭଏଲ୍ ( ପରି ) ? ତୁମକୁ ‘ବୈନିକା’ ବଲି ଡାକ୍‌ଲି ପିନା । ଦେଖ । ସୀତା ମୈଥିଲାଥି ଜନମ୍ ହେଇଥିଲେ

ବଳି ତାଙ୍କୁ ଲୁକେ କହୁଥିଲେ 'ମୈଥିଲୀ' ବଲି । ତୁମେ ଜନକାଥି ଜନମ୍ ହେଇନ୍ତ । ଜନମ୍ ମାଟିର୍ ତ ଫେର୍ ଆଦର୍ ଅଛେ । ତୁମେ ଜନକାର୍ ଜନମ୍ ବଲି ତୁମକୁ ବୈନକୀ ବଲି ଡାକ୍‌ଲା ବେଲେ ତୁମେ ଆନୁଛ 'ପନ୍‌ଖି' । ହାଃ ହାଃ ।

ଚମ୍ପାବତୀ—ଏତେ କଥା ଆଜ ମୁଇଁ ଜାନିଛେଁ । 'ବନକୀ' ଆଉର୍ 'ପନ୍‌ଖି' ଏକା ବାଗିର୍ (ପରି) ଶୁଭୁଛେ ।

ଗଙ୍ଗାଧର – ଆଛା ହାଏଁ ଝା ବୁଝି ନାଇଁ ବଇଲେ କାଣା 'ବନ୍‌କଏନ୍' ବଲି ଡାକ୍‌ମି ?

ଚମ୍ପାବତୀ—ମୋର୍ କାଣା ନାକ୍ ନାଇଁନ ? ମୋର କାଣା ଭଲ୍ ନାଆଁ ନାଇଁନ ? 'ଚମ୍ପାବତୀ' ବଲି ଏତେ ସୁନ୍ଦର୍ ନାଆଁ ଥାଉଁନ୍ ଥାଉଁନ୍ ଯାଏଁ ତାଏଁ ଅଗିଡ୍ ବଗିଡ୍ ନାଆଁମାନ ଧରି କାଇଁକି ଡାକ୍‌ସ କହ ତ ?

ଗଙ୍ଗାଧର- ଦେଖ ବଡ୍ଡୁଙ୍କର ସହସ୍ରେ ନାଁ । ଲକ୍ଷ୍ମୀ, ସରସ୍ୱତୀ, ପାର୍ବତୀ ସମସ୍ତଙ୍କର ବାର ପନ୍ଦରଟା ଲେଖା ନାଁ । ଆଉର୍ ତୁମ୍‌କୁ ସବୁଦନେ ଗୁଟେ ଯୁଡ଼େ ନାଆଁ ଧରି କେତେ ଡାକୁଥିମି । ଏଥର 'ବୈନକୀ' ବଲି କରି ତୁମ୍‌କୁ ଡାକ୍‌ମି ।

ଚମ୍ପାବତୀ—ନଡ଼ଆ ଫଟେଇ କରି ଇ ନାଆଁଟା ଦେଇଛ କାଏଁ ? ପନ୍‌ଖି ମାଗୁଥିଲ ଯେ ପନ୍‌ଖି ଥି ନାକ କାଟି କରି ସୁପ୍‌ନେଖି (ଶୂର୍ପଣଖା) ନାଆଁ ଦଉ ନାଇଁ ଯେ । ହଁ ନାଆଁ କଥା କହିଲ ଯେ ? କାଇଁଥି ଲାଗି ଡାକୁଥିଲ ?

ଗଙ୍ଗାଧର – ଏ ଦେଖ ପୁରୋହିତ ଦକ୍ଷିଣା ମିଳିଛି ଆଠ ଅଣା । ଇଟାକୁ ନେଇକରି ବାକସ୍‌ରେ ରଖିଦିଅ । ମୁଁ ପାସ୍‌ରୁ ପକାଯିବି ।

ଚମ୍ପାବତୀ—ପୁରୋହିତ ଦକ୍ଷିଣା ? ବାହ୍ମଣ କେଉଁଠି ହେଲେ ?

ଗଙ୍ଗାଧର – ବାହ୍ମଣ୍ ହେଲେ ଯାଇ କଣ ପୁରୋହିତ ଦକ୍ଷିଣା ମିଳ୍‌ବ ? ଦୁଇଟି (ଜଣ) ବର୍ କନ୍ୟାଙ୍କ ନାଇଁ ପତ୍ନୀ ଥାଇ । ପିଲାଟା ଶଶୁର ଘରେ ଘର୍‌ଜ୍ୱାଇଁ ହେବ ନାଇଁ ବୋଲି ବଳ ପଳେଇଥିଲା । ପଛେ ଝୁକିର୍ ବାପ୍ ଝିଅର୍ ତର୍‌ଫୁ ଖୁବ୍ ନାଲିସ୍ କଲା ବେଳେ ଦୁହି ପକ୍ଷ ରାଜିନାମା ହୋଇ କରି ଜ୍ୱାଇଁଟା ଫେର୍ ଶଶୁର୍ ଘରେ ରହିବ, କନ୍ୟାଙ୍କୁ ମାନିକରି ଚଲ୍‌ବି, ବୋଲି କରି ଖଣ୍ଡେ କାଗଜ ଲେଖିଦେଲା । ଲେଖନ୍‌କାର୍ ହିସାବ୍‌ରେ ଇଟା ମିଳିଛି ଦକ୍ଷିଣା ଆଠ ଅଣା ।

ଚମ୍ପାବତୀ – ଆଚ୍ଛା, ଆଜ୍ କାଲ୍ ପରେ ଲେଖାପଢ଼ା ରେଜିଷ୍ଟ୍ରି କରି ବାହାଘର ଭି ଚଳିଯାଉଛି ।

ଗଙ୍ଗାଧର—ହଁ, ହଁ । ସାହେବୀ କାଏଦାରେ ବାହାହେଲେ ଆଉର୍ ବର୍‌ଯାତ୍ରୀ ଦର୍‌କାର୍ ନାଇଁ, ‘ଉଣିବାଉଣି (ବନ୍ଧୁବାନ୍ଧବ) ଭେଘର ଦରକାର ନାହିଁ । ହାତଗଣ୍ଠି ନାଇଁ ପଡ଼୍‌ଲେ ହୁଏ, ମିଆଁ ବିବି ଦୁହିଜନ କାଗଜ୍‌ରେ ଦସ୍ତଖତ୍ କରି ଦେଇ ଘଇତା ମାଇପୋ ହେଇକରି ରହିଲେ । ଭୁଜଭାତ୍ ଦେଲେ ଭଲ୍, ନାଇଁ ଦେଲେ ଭି କିଛି ଯାଏ ଆସେ ନାଇଁ ।

ଚମ୍ପାବତୀ—ଏକ୍ରା ସୁବିଧା ଅଛି ବଏଲେ ତୁମେ ଗୁଟେ ବହାଘର୍ ଅପିସ ଟେ ଖୁଲ୍ ନାଇଁ ଯେ । ଏତେ ଏତେ ଖର୍‌ଚ୍ କର୍‌ବାକେ ନାଇଁ ପଡ଼ତା । ଲେଖନ୍‌କାର୍ ହେଇ କରି ତୁମେ ବଧାତା ପୁରୁଷ୍ ବାଗିର୍ କେତେ ନଲ ଆଉର ଦଏମନ୍ତୀ, କେତେ ରବଣ ଆଉର୍ ମନ୍ଦୋଦରୀକେ ବହା କରେଇ ଦେଉ ।

ଗଙ୍ଗାଧର—ହାନ୍ରା ହେଲେ ବାଦୁରନେ ଆଉର ମତେ ରଖିଦେବେ ।

(ଏହି ସମୟରେ ଦୂରରୁ ଶଙ୍ଖଧ୍ୱନି ଶୁଣାଗଲା)

ଚମ୍ପାବତୀ—ର, ସନ୍ଧ୍ୟା ଦେଇ ଆଇସିଁ (ଚମ୍ପାବତୀଙ୍କର ପ୍ରସ୍ଥାନ)

ଗଙ୍ଗାଧର—ଲଲ୍‌ଟିନ୍‌ଟା ଜାଳି କରି ଆନିଥିବ ।

(ଗମ୍ଭୀର ଭାବରେ ଆଖି ବୁଜି)

ବିଶ୍ୱଜୀବନ ହେ, ତୁମ୍ଭଙ୍କୁ କରୁଣା ସିନ୍ଧୁ
ବୋଲିବାକୁ ମନ ବଳୁନାହିଁ ଯେଣୁ
ସିନ୍ଧୁ ତବ କୃପା ବିନ୍ଦୁ ।
ତୁମ୍ଭ ଭଜନରେ ହେଉ ନାହିଁ ନାଥ
ମାଳ ଜପିବାକୁ ବାଧ ।
କୋଟି କୋଟି ଗ୍ରହ କଣ୍ଠି ସେ ମାଳାର
ଜପି କେ କରିବ ସାଧ ।
ଦେଇନାହଁ ବଳ ପଦଧୂଳି ଦେନା
ପାରିବ ନାହିଁ ମୋ ମୁଣ୍ଡ
କୋଟି କୋଟି ରବି ଧୂଳିରୂପେ ତୁମ୍ଭ
ପଦେ ହୋଇଛନ୍ତି ଚୂର୍ଣ୍ଣ ।

( ଲଣ୍ଠନ ଧରି ଚମ୍ପାବତୀ ଦେବୀଙ୍କର ପ୍ରବେଶ )

ଚମ୍ପାବତୀ—ଆଜି ଯେନ୍‌ମାନ୍‌ କରନୁ (ଯେଉଁମାନଙ୍କଠାରୁ) ଦକ୍ଷିଣା ପାଇଲ, କେତେ କେତେ ବର୍‌ଷର୍‌ ହେବେ ?

ଗଙ୍ଗାଧର—(କୃତ୍ରିମ ଗାମ୍ଭୀର୍ଯ୍ୟ ପ୍ରକାଶ କରି) ହୈକେଲ୍‌ଟା ତ ତୁମର୍‌ ଥୁ କେତେ ସାନ ହେବୁ । ତୁମେ ଯେଉଁ ଦିନ୍‌କେ ମୋର୍‌ ଘର୍‌କେ ଆଇଲ, ଠିକ୍‌ ସେହ୍ନକି ବରଷର ହେବା ।

ଚମ୍ପାବତୀ—ଖୋଲ୍‌ ସୁନ୍ଦ୍‌ସ୍ରୀହା ? ନାଇଁ ?

ଗଙ୍ଗାଧର—(ଗମ୍ଭୀର ସ୍ୱରରେ) ସତ୍‌ କହିମି କି ମିଛ କହିମି ?

ଚମ୍ପାବତୀ—ତୁମେ କେବେ ମତେ ସତ୍‌କଥା କହିସ ?

(ଉଭୟେ ହସି ପକାଇଲେ) ।

ଗଙ୍ଗାଧର—(ହସକୁ ଦମନ କରି) ଆରେ, ବାବୁ ଭଗବାନ୍‌କେ ଜେର ଆନୁଥିଲ କାଏଁ ଯେ ?

ଚମ୍ପାବତୀ—ନାଇଁ । ଆଜି ତପ୍ତି ନାଇଁ ଦେଇ ସଖାଲୁ । ଇ ବେଳେ ନାନାଜିଉର ଖେଲ୍‌ ଦେଖି ଯାଇଛେ ବଲି ବାହାରି ଯାଇଛେ ।

ଗଙ୍ଗାଧର—(ଚିନ୍ତିତ ସ୍ୱରରେ) କାଲି ଦିନ ଯାକର୍‌ ଉପ୍‌ସ ଥିଲ । ଆଜିର୍‌ ସକାଳ ଯାକର୍‌ ଏତେ ପାନି ବର୍ଷିଛେ । କିକେ ବର୍ଷା ଥାମ୍‌ଲା କି ବାବୁ ବାହାରିଗଲା ନାନାଜିଉର ଖେଲ୍‌ ଦେଖି । ତୁମେ କିକେ ମନା ନାଇଁ କଲ ?

ଚମ୍ପାବତୀ—ମୋର୍‌ କଥା ବାବୁ କାଣା ଶୁନ୍‌ସି ? ଯୁଟିଗଟର (*) ଭ ସଙ୍ଗେ ଯାଇଛନ୍‌ । ତୁମେ ମନା କର୍‌ନ ବଏଲେ ପରେ ।

---

* ଯୋଗେଶ୍ୱର ମେହେର କବିଙ୍କ ଗୃହରେ ରହି ପାଠ ପଢ଼ୁଥିଲେ ।

ଗଙ୍ଗାଧର—ବଡ଼ ହେଲେଣି ବାବୁ । ବୁଦ୍ଧି ହେଲାଣି । କାଁ ବଳି ବୁଝାମି କହ । କାଲି ଜର୍ ଥିଲା । ଆଜି ଯଦି ନଦୀକେ ନାନାଜର ଖେଳ ଦେଖି ଯାଇକରି ଧୁକା ପବନ୍ ଖାଏବା, ପାଣିଥି ଚୋଡ଼୍ ହାତୁ କପଡ଼ା ଉଦା ହେବା ବଏଲେ ଫେର୍ କାଲ୍କେ ଜର୍ କୁହ୍ବା । ମୁଇଁ ତାର୍ ବଇସିଆ ହେଇଥିଲି ବେଳେକୁ ମୋର୍ ତ ଦର ବଢ଼ିଥିଲା ନେ ।

ଚମ୍ପାବତୀ—ହଁ ଠିକ୍ ମନେ ପକାଲ । ତୁମେ ବହୁକେ ଘରୁକେ କାଇଁକି ନାଇଁ ଆନ୍ବାର୍ । ଭମର୍ ସମଧୁଣୀ କେତେ ଥର୍ କହ୍ଲା ପଠାଲେଣି ବହୁ ହୁକେ ବନ୍ଦନା (ବନ୍ଦାପନା) ନିଅ ବନ୍ଦନା ନିଅ ବଲି । ତୁମେ ତ ଶୁନ୍ବାର ନାଇଁ । ବାବୁର ଘର୍ ବସ୍ଲେ ଆମେ ଭି ଚିନ୍ତା ଥୁ ପାର୍ ପାଏତାଁ ।

ଗଙ୍ଗାଧର—(ଚିନ୍ତିତ ସ୍ୱରରେ) ବହୁ ପରୀକ୍ଷା ଖାଇବାକେ ମନ୍ ଡାକୁଛେ କାଏଁ ? ବହୁକେ ନେଇ ଯିମା । ବାକି ନାଇଁ ଦେଖୁଛୁ ବାବୁ ଆଜ୍ କାଲିଜର୍ ତ କାଏଲ୍ ଆମସା ବାହାର୍କେ ତ ପରଦାନ ଅଜାଣ୍ଟି ଧରୁଛେ । ଇନ୍ତା ଦହେ କେନ୍ତାଇ ବନ୍ଦନା କରି ଦେମା କହ । ଯାଉ ଇ ମଗଶିର ପୁଷ । ପୁଟେଗଣରର ପଢ଼ା ଏସୁର ( ଏ ବର୍ଷ ) ସରିଗଲେ ଭଗବାନର ବନ୍ଦନା କରି ଦେମା । ଘରେ କାରା ନାଇଁ ହେ ବହୁକେ ଆନି କରି ଘରେ ରଖ୍ବାର ଲଗି ।

ଚମ୍ପାବତୀ—ଇଟା ତ ଆଜିର୍ ଗନ୍ଧ୍ରା ପୁନି ଗଲା । ଭୁଦୋ, ଦଶରା, କାର୍ତ୍ତିକ୍, ମଗଶିର୍ ଗୁର୍ ମାସ୍ । ଦେଖ, ଇଥର ସମଧି

ଘରୁ ଲୁକ ଆଇଲେ ମୁଇଁ ଜବାବ୍ ଦେଇ ଦେମି ପୁଣେ ବହୁ ଆନ୍‌ବାର କଥାକେ ।

ଗଙ୍ଗାଧର—ଗଙ୍ଗା ପୁନି ଆଜ । (ଗମ୍ଭୀର ଭାବରେ) ଗଙ୍ଗା ପୁନି । ଆଜି ହେଲା ପଚାଶ୍ ବରଷ୍ । ମୋର ମାଆର୍ କଥା ମନେ ପଡୁଛେ ଆଜି । ଜନମ୍ ଦିନ୍ ବଲକର କେତେ ଆଦର୍ କରି ପିଠାପନା କରେ । ଧାନ୍‌ଦେଇ କରି ଆଶୀର୍ବାଦ୍ କରେ । ଆଜ କାହିଁ ଗଲା ମୋର୍ ମାଆ । ମୁଇଁ ବୁଢ଼ା ହେଇ ଗଲିନ ।

ଚମ୍ପାବତୀ—ଛି, ଛି ହାଲ୍ଲା କଥା ନାଇଁ କହିବ । ମାଆର୍ ଆଶୀର୍ବାଦେ ତୁମେ ଅଷ୍ଟଉତ୍ତର୍ ଶହେ ବରଷ୍ ବଞ୍ଚ୍‌ବ ।

ଗଙ୍ଗାଧର—ଅଷ୍ଟ ଉତ୍ତର ଶହେ ବରଷ । ନାଇଁ ନାଇଁ ଚମ୍ପା । ଏତେ ଦୁଃଖୀ ଜୀବନ ଧରି ଶହେ ବରଷ କେନ୍ତେଇ ବଞ୍ଚି ପାର୍ମି । ଦୁଃଖୀର ଜୀବନ୍ ଦିନ୍‌କେ ଯୁଗେ । ଗୁଟେ ବଲି ପୁଅ । ପାଠ ନାଇଁ ପଢ଼ି ମୂର୍ଖ ହେଇ ବୁଲ୍‌ଲା । ଆଜିର୍ ଭଲ୍ ଅଛେ ବଏଲେ କାଲି ଜରେ କୁହୁରୁଥିବା । ପରର୍ ପୁଅଟେ ଯୁଗେଶର୍‌କେ ପୁଅ ବାଗିର୍ ପଢ଼େଇ ଲେଖେଇ ବଡ଼୍‌ଲୋକ୍ କର୍ମି ବଲୁଛେଁ ଯେ ତାର୍ ଭି ଗୁଏ ରକମ ଠିକ୍ ନାଇଁ । ସେ ଆଡ଼େ ଜମି ବାଡ଼ି ଦେଖା ଚହା କର୍‌ବାର୍ ଲୋକ ନାଇଁ । ଜମିଦାର ଘରେ ମନ କଲେ ଜମିକେ ପାନି ଗୁଡ଼େ ନାଇଁ ଦେଲେ ଧାନ୍ ନକ୍‌ସାନ ହେଇ ଯାଉଛେ । ଗୁଟେ ନୌକରି କରି ହାନ୍ ମାନିଆ ହେଇକରି ଗାଁ ଘର୍ ବନ୍ଧୁ କୁଟୁମ୍ବ—ସମସ୍ତଙ୍କର୍‌ନୁ ଏତେ ଧୂରେ ରହି

କରି ମନେ କେତେବେଳେ ଶାନ୍ତି ନାହିଁ । ଆଜି ଟିକେ ପାଗଳାମି ଅଟନ୍ତି ଲେଖା ଲେଖି କରିବାର୍ ସେ ସବୁବେଳେ ତୁମର୍ ଆଖିର୍ କୁହା ବାଘର୍ ବଇରି ହୋଇଛନ୍ତି ।

ଚମ୍ପାବତୀ—ଏତେ ଏତେ ଲେଖୁଛ ଯେ ସେଥୁ କେତେ ପଇସା କମାଲ ନେ କହନ୍ତ ? ଘରେ ବହି ରଖିବାର୍ ଲାଗି ଜାଗା ନାହିଁନ । ମୂଷା ଉଇ ସତେ ଜଗି ବସିଛନ୍ତି ତୁମର୍ ଲେଖା, ମିଠା ଜିନିଷ, ଟିକେ ପାଏଲେ ଖାଏନ୍ତୁ ବଳକରି । ବାକ୍ସ ମାନଙ୍କେ ତୁମର୍ ମାନଙ୍କର୍ ମଠା, ପାଟ, କପଡ଼ାଲତା, ମୋର୍ ଲୁଗା, ଶାଢ଼ୀ ନାଇ ରଖିକରି ବନ୍ଦି ରଖିଛ । ଆଜି ମୂଷା କାଟୁଛନ୍ ବାହାରେ ପଡ଼ିଥିବାର୍ କପଡ଼ା । ମୁଁ ଶୁଣିଛେଁ ତୁମେ ଏତେ ସୁନ୍ଦର୍ ଲେଖା ଲେଖୁଛ ଯେ ତୁମର୍ ବହିମାନ୍ ପାଟ୍ ମଠାଥୁ ଭି ଅଧିକ୍ ସୁଆଦ୍ ।

ଗଙ୍ଗାଧର—(ହସି ପକାଇ) ଖାଏବ ଗୁଟେ ଅଟେ ବହି ।

ଚମ୍ପାବତୀ—ମୋର୍ ଖାଇବାର୍ କଥା କହୁଛେଁ ଭାଏନ୍ । ମୁଁ ବଲୁଥିଲ ମୂଷାମାନ୍ଙ୍କୁ ପୋକମାନଙ୍କୁ ତୁମର୍ ବହିମାନ୍ ମଠା ଶାଢ଼ୀ ଥୁ ଭି ଅଧିକ୍ ସୁଆଦ୍ ଲାଗ୍ସି ବଲି କରି ଯେ ବହି-ମାନ୍ ବାକସ୍ ଥି ଲୁକେଇ ରଖୁଛ ।

ଗଙ୍ଗାଧର—ଟିକେ ଗୃଖି ଦେଖିବ ?

ଚମ୍ପାବତୀ—ମୁଁ କାଣା ମୂଷା ବାଗିର୍ ଦିଶୁଛେଁ ?

ଗଙ୍ଗାଧର—ଆଚ୍ଛା ମୂଷା କଲ୍ (କଳ) ବସା ହୋଇଥିଲ ଯେ ମୂଷା-ମାନେ ନାହିଁ ମଟଲ୍ ସମସ୍ତେ ।

ଚମ୍ପାବତୀ—ସଗର୍ ରଜାର୍ ବଉଁଶ୍ ବାଗିର୍ ଅଛନ୍ ମୂଷାମାନେ । ଯେତେ ମାଇଲେ ବି ନା କେତେ ଉତ୍ତୁ ଫେର୍ ବଢ଼ୁଛନ୍ । ମୂଷାମାନେ ଦିନୁଦିନ୍ କେ ଅଧିକ୍ ଚଲକ୍ ହେଇ ଯାଉଛନ୍ । ବାଇଙ୍ଗନ୍ କ ମସ୍ତା ତ ଘାଉଥି ଦେଲେ ଯସନ୍ ନାଇଁ କର୍ବାର୍ ।

ଗଙ୍ଗାଧର—ହାନ୍ତା ହେଲେ ମୋର୍ ବହି ଖଣ୍ଡେ ଖଣ୍ଡେ ଘାଉଥି ଦିଅ ନାଇଁ ଯେ ?

ଚମ୍ପାବତୀ—ବହି ଦେଲେ ଆଉର୍ ଚଲକ୍ ହେଇପିବେ । ତବା ଘରର୍ କାଲି ସବୁବେଲେ ବନ୍ଦ୍ କର୍ବାକେ ପଡ଼ୁଛେ ବଲି କରି ମୂଷାମାନ୍କର ଉତ୍ପାତ୍ ଅଧିକା ଅଧିକା ହେଉଛେ । ତବାର୍ କାଲି ଟିକେ ମେଲା କଲେ ପଠାନ୍ ଲେକ୍ଟା ଏନ୍ତା ଏଡ଼େ ଆଖି କରି ଉଗରଉଥିସି ମୋର୍ ଆଡ଼େ ।

ଗଙ୍ଗାଧର—ଟିଲେ ଦେବା ବଲି ଉରସ କାଏଁ ?

ଚମ୍ପାବତୀ—(ଅଭିମାନ ଭରା ସ୍ୱରରେ) ତୁମେ ତ ସବୁ କଥା ଝିଁପି କରି ଉଡ଼େଇ ଦେସ । ତୁମେ ଘର୍ ଚିନ୍ଲ ଯେ ସନ୍ଧା ନାଇଁ । ପାଇକରି ପଠାନ୍ ଘର୍ ବନାଲ ଆଉର୍ ବଡ଼୍ ବଡ଼୍ କାଲି ଆମର ଘର୍ ଆଡ଼େ ରଖ୍ଲ । ଘରେ ଆଉ ପରଦା ନାଇଁ ରହିଲା । ସେତ୍କିବେଲେ ଭଲ୍ କରି ମନାକରି ଥାଏତ ବଏଲେ ହେଇ ଥାଏତା । ଇଛେନ୍ ଇ ଘରେ ଝିଅ ବହୁ ଧରି କରି ଇଜ୍ଜତ୍ ରଖି କରି କେନ୍ତେଇ ଚଲ୍ମା କହତ ?

ଗଙ୍ଗାଧର—(ଚକିତ ଭାବରେ) ପଠାନ୍ ଘର୍ ବନାଇ ବେଲ୍‌ନେ ମୁଇଁ ତାଙ୍କେ କମ୍ ତ ମନା କରିଛେଁ, ଅଲ୍‌ପେ ଖୁସାମତ୍ କରିଛେଁ ? ଓଲ୍‌ଟିଆ ସେ କେତେଡ଼ ରଖି ହେଇ କରି, "ଶାଲ ଭୁଲ୍‌ଆ, ହମ୍ ଅପ୍‌ନା ଜମିନ୍ ମେଁ ଘର୍ ବନାଏଙ୍ଗେ, ଓସ୍‌ମେ ତେରା ବାପ୍‌କା କ୍ୟା ହେ ।" ବଲିକରି ପିଠି କୁଦଉଥିଲା । ନାଲିସ୍ କର୍‌ବାର୍ ଲାଗି କେତେ ଲୋକ କହିଲେ । ବାଙ୍କ ପାନିଥ୍ ରହିକରି ମଗର୍ ସଙ୍ଗେ କାଏଁ ଝଗଡ଼ା କର୍‌ମା । ଦୁଷ୍ଟ ଲୋକଙ୍କୁ ମୋର ଡର । ସମ୍ପତ୍ତି-ସବୁ କପାଳର୍ କଥା । ଯାର୍ କପାଳେ ନାଇଁ, ସେ ଶୁକେ ସମୁଦ୍ରକେ ଦେଖ୍‌ଲେ, ସମୁଦ୍ର ଭି ଶୁଖି ଯାଇସି ।

ରମାବତୀ—ତ କେନ୍ତା କର୍‌ବ କହ । ଏତେ ଖର୍‌ଚ୍ଚ କରି ଘର୍ ଘେନ୍‌ଲ । ଯଦି ଘରେ ରହି ନାଇଁ ହେଲ କାଣା କର୍‌ବ ?

ଗଙ୍ଗାଧର—ବିକି ଭାଙ୍ଗି ଦେମା ହେଲେ ଘରଟା କାହାକେ ?

ରମାବତୀ—ନିଜର୍ ଘର୍ ବିକି ଦେଇ ଭଡ଼ା ଘରେ ରହିବ ? ଆଜ୍ଞା ଅକଲ୍ ତ ତୁମର୍ ।

ଗଙ୍ଗାଧର—ସମ୍ପତ୍ତିଟା ଯଦି ବିପତ୍ତି ହେଲ, ଆଉ କାଣା କରିଯାଏ ? ଦୁନିଆଁଟା ହେଲା ସରେଇ ଘର୍ । ଇ ଘର୍‌ନେ ଗୁଟେ ସରେଇ ଘର୍ ବଲି ଭାବିନିଅ । ଆଜିର୍ ଅନ୍ତୁ କାଲି ବୁର୍‌କା ପେଣ୍ଡା ବାନ୍ଧିକରି ଯିବାକେ ହେବା ।

ରମାବତୀ—(ଗାଲରେ ହାତ ଦେଇ) ହଜ । (ଉଭୟେ କିଛିକ୍ଷଣ ନୀରବ ରହିଲ ପରେ) କାହିଁ ଗଲେ ପିଲମାନ୍‌କର୍ ଦେଖାନାଇଁ ଏତେ ବେଳ ହେଲାନ । (ଠିକ୍ ସମୟରେ

ଦୁଇ ଜଣ ସତର ଅଠର ବୟସର କିଶୋର. ଭଗବାନ ଓ ଯୋଗେଶ୍ୱର ଏ ପଟରୁ ସେ ପଟକୁ ଗୃହଗଲେ । ଚମ୍ପାବତୀ ଦେବୀ ମଧ୍ୟ ତାଙ୍କର ପଛେ ପଛେ ଗଲେ) ।

ଗଙ୍ଗାଧର—ଯୋଗେଶ୍ୱର ।

ଯୋଗେଶ୍ୱର—(ପ୍ରବେଶ କରି) ମଉସା ?

ଗଙ୍ଗାଧର—ଏତେବେଳେ ଯାଏ କାହିଁ ଯାଇଥିଲ ?

ଯୋଗେଶ୍ୱର—ବାଲଙ୍କାରାକେ ନାନାଉଣ ଦେଖି ଯାଇଥିଲୁଁ ।

ଗଙ୍ଗାଧର—ନାନାଉଣ ଦେଖିବାରୁ ଏତେ ଡେରି ? ଭଗବାନକୁ କାଲି ଉଣ ଦେଇଥିଲି । ଆଜି ସକାଳେ ମୋର ଏତେ କର୍ଷା ବଲିଛିରେ । ତାର ଦେହ ଯା ନଶ୍ବା ନାଳ କାନିଜିଣ ଗଲା ?

ଯୋଗେଶ୍ୱର—ମୁଁ ତ ଭଗବାନକୁ ମନା କରୁଥିଲି । ମୋର କଥା ନାହିଁ ମାନି କରି ଗଲା ।

ଗଙ୍ଗାଧର—ଦେଖ, ତୁମର ବ ପଢ଼ା ଶୁଣା ଠିକ୍ ନାହିଁ ହେବାର୍ । ଏତେ କଷ୍ଟ କରି ଗାଁରୁ ଆଇଛ ଦୁଇ ଅକ୍ଷର ପାଠ ଶାଠ ପଢ଼ି କରି ବଡ ନୌକରୀଟେ କରିବ ବଲିକରି । ଆଜ ତୁମେ ଭ ଯଦି ନାହିଁ ତାମସା ତାସ୍ ଗଞ୍ଜିପାଥି ସମସ୍ତ ବର୍ବାଦ୍ କରିବ ବଏଲେ କେଉଁଠି ପାସ୍ କରିବ ? ପାସ୍ ନାହିଁକରି ପାରିଲେ ପାଠ୍ନା ଦର୍ବାରୁଥୁ ଯେନ୍ ବୃତ୍ତି ପାଉଛ ସେଟା ଭ କଟିଯିବା । ତୁମର ପଢ଼ା ଶୁଣା ବନ୍ଦ୍ ହେଇଯିବା । ବାରବର୍ଷର୍ ତପସ୍ୟା ଶୁଖିଆ ପୂର୍ତ୍ତାଥି ଯିବା । ତୁମର ମାଆ ବାପା ଆଉର ମୁଇଁ ତୁମର୍ ଉପରେ

କେତେ ଆଶା ଭରସା ରଖିଛୁଁ । ଯ ବଡ଼ ଆନ । ଟିକେ ପଢ଼ା ଶୁନା କର ।

ଯୋଗେଶ୍ୱର—(ବଡ଼ପଦ ଆଣି) ଇଟା (ଏଇଟା) ଟିକେ ବୁଝେଇ ଦେଉଛ ? ମାଷ୍ଟ୍ରେ ଇଟା ଘରେ କରି ଆନିବାର ଲଗି ଦେଇଛନ୍—Find the area of a trapezium whose parallel sides are 22 ft. and 29 ft. and the other sides are each 7 ft.

ଗଙ୍ଗାଧର—(ଖାତାଧରି ଚିତ୍ର ଆଙ୍କି) ଏ ଦେଖ ABCD ହେଲ ଟ୍ରାପିଜିଅମ୍ । AB ଆଉ CD Parallel, AD ଆଉ BC...... (ଏହି ସମୟରେ ବାହାରୁ ଶୁଣାଗଲା,“ଗଙ୍ଗାଧର ବାବୁ ଘରେ ଅଛନ୍ତି ?”)

ଗଙ୍ଗାଧର—(ଯୋଗେଶ୍ୱରଙ୍କୁ) ଯ ତ ଦେଖି ଆସିବ କିଏ ଆଇଛନ୍ ଯେ ?

ଯୋଗେଶ୍ୱର—(ବାହାରକୁ ଯାଇ ଫେରି) ଆମର ହେଡ୍‌ମାଷ୍ଟ୍ରେ ?

ଗଙ୍ଗାଧର—[ସସମ୍ଭ୍ରମେ ଉଠିପଡ଼ି] ଓଃ ନନ୍ଦକିଶୋର ବାବୁ । [ବାହାରକୁ ଯାଇ ପାଛୋଟି ଆଣି] ଓଃ କି ସୌଭାଗ୍ୟ ମୋର । [ପ୍ରବେଶ କଲେ ଶ୍ରୀ ନନ୍ଦକିଶୋର ବଳ, ଚନ୍ଦାମୋହନ ହେଡ୍ ମାଷ୍ଟର, ସମ୍ବଲପୁର ଜିଲ୍ଲା ସ୍କୁଲ । ମୁଣ୍ଡ ଚନ୍ଦା । ମୁହଁ ଟିକିଏ ଲମ୍ବା—ସାମାନ୍ୟ ନଶରେ ଶୋଭିତ । ଗୋଟିଏ ମାଟିଆ ବନ୍ଦ କୋଟ୍ ଓ ଧୋତି ପିନ୍ଧିଛନ୍ତି ଓ ବାଁ କାନ୍ଧରେ ଗୁଦର ପଡ଼ିଛି ।)

ଗଙ୍ଗାଧର—ଆସିବା ହେଉ । ଆସିବା ହେଉ । କି ଭାଗ୍ୟ ମୋର ।
[ଭିତରୁ ଗୋଟିଏ ଖଟ ଆଣି ପାରିଦେଇ] ବସିବା ହେଉ ।

ନନ୍ଦକିଶୋର—ଆଜି ମୋର ମହାଭାଗ୍ୟ । ଆଜି ଗମ୍ଭା ପୁନି । ରକ୍ଷା ବନ୍ଧନର ଦିନ । ଜଣେ ଜ୍ୟେଷ୍ଠଭ୍ରାତା ଲାଭ ବା ଉପାର୍ଜନ କରିବା ଆଶାରେ ଆସିଛିଁମୁଁ । ଆଣନ୍ତୁ ଆପଣଙ୍କର ହାତ । [ଡାହାଣ ହାତରେ ରାଖି ବାନ୍ଧି ଦେଇ] ଆଜିଠାରୁ ମୁଁ ଆପଣଙ୍କର ସହୋଦର ଭାଇ ହେଲି । [ଆଲିଙ୍ଗନ କରି] ମନେ ଅଛିନା ଆପଣଙ୍କର ? ମୁଁ ଆପଣଙ୍କଠାକୁ ଥରେ ଲେଖିଥିଲି ।

ଚିହ୍ନ କି ନ ଚିହ୍ନ ମୋତେ ତୁମ୍ଭେ ଜାଣେ ନାହିଁ
ତୁମ୍ଭଙ୍କୁ ମଣଇ କିନ୍ତୁ ମୁହିଁ ନିଜ ଭାଇ ।
ଲୋଡ଼େଁ ନାହିଁ ଦେଖିବାକୁ ମୁଁ ତୁମ୍ଭ ମୂରତି
ଦେଖି କାଳେ ତୁଟିଯିବ ମାୟା ତବ ପ୍ରତି ।

କିନ୍ତୁ ଆପଣଙ୍କୁ ଦେଖିଲା ପରେ ମାୟା ଯେ ଆହୁରି ବୃଦ୍ଧି ହୋଇଛି, ଆକର୍ଷଣ ଆହୁରି ବଳୀୟାନ୍ ହୋଇଛି ।

ଗଙ୍ଗାଧର—(ବାଷ୍ପଗଦ୍‌ଗଦ ସ୍ୱରରେ) ମୁଁ—ଆପଣଙ୍କର—ଭାଇ ? କ୍ଷଣଜନ୍ମା, ବିଦ୍ୱାନ୍, ଗୁଣଗ୍ରାହୀ ସୁଧୀଶ୍ରେଷ୍ଠ କବି ନନ୍ଦକିଶୋରଙ୍କ ଭାଇ ଅଧମ ଗଙ୍ଗାଧର ମେହେର । ମୋତେ ଆପଣ ଆଜି ଭାଇ ବୋଲି ଡାକି ଧନ୍ୟ କରି କରିଛନ୍ତି ।

ନନ୍ଦକିଶୋର—ପ୍ରକୃତିର ପ୍ରିୟ ଶିଷ୍ୟ, ଉତ୍କଳ ଲକ୍ଷ୍ମୀଙ୍କର ବରପୁତ୍ର, ପ୍ରତିଭାର ମୂର୍ତ୍ତିମନ୍ତ ଅବତାର, ଆପଣଙ୍କୁ ଭାଇ ବୋଲି ସମ୍ବୋଧନ କରିବାର ଅଧିକାର ପାଇ ମୁଁ ଧନ୍ୟ ହୋଇଛି ।

ସମ୍ବଲପୁରକୁ ମୋତେ ଯେତେବେଳେ ବଦଳି ହେଲା, ମୁଁ ଏଠାକୁ ଆନନ୍ଦରେ ଆଶା କରି ଆସିଲି ଯେ ମୁଁ ହୀରା-ଖଣ୍ଡର ହୀରା ଦେଖିପାରିବି । ଆପଣଙ୍କୁ ଦେଖି ମୋର ସେ ଆଶା ପୂର୍ଣ୍ଣ ହୋଇଛି ।

ଗଙ୍ଗାଧର—ମୁଁ ଆପଣଙ୍କର ଏ ପ୍ରଶଂସାର ଶତାଂଶରୁ ଏକ ଅଂଶ ପାଇଁ ମଧ୍ୟ ଯୋଗ୍ୟ ନୁହେଁ । ଆପଣ ନିଜର ମହତ୍ତ୍ୱ ଗୁଣ ଯୋଗୁଁ ଗୁଣଗ୍ରାହିତା ଯୋଗୁଁ ମୋର କ୍ଷୁଦ୍ରତାକୁ ମଧ୍ୟ ମହତ୍ତ୍ୱରେ ପରିଣତ କରିଛନ୍ତି । ବସିବା ହେଉ ।

(ନନ୍ଦକିଶୋର ବାବୁ ଖଟରେ ବସିଲା ପରେ ଗଙ୍ଗାଧର ତଳେ ବସିବାକୁ ଯାଉଥିଲେ । ନନ୍ଦକିଶୋର ତାଙ୍କୁ ଉଠାଇ ଏକା ଖଟରେ ବସାଇ)

ନନ୍ଦକିଶୋର—ଆପଣ ହେଲେ ମୋର ଜ୍ୟେଷ୍ଠଭ୍ରାତା । ମୁଁ ଖଟରେ ବସି ଆପଣ ତଳେ ବସିଲେ କଣ ସୁନ୍ଦର ଦିଶିବ ? ଆଜି ପରା ଆପଣଙ୍କର ଜନ୍ମଦିନ ? ସେଥିପାଇଁ ଆପଣଙ୍କୁ ଅଭିନନ୍ଦନ ଜଣାଇବା ପାଇଁ ମଧ୍ୟ ମୁଁ ଆସିଲି । ଏହା ବି ମୋର ବିଶେଷ ଭାଗ୍ୟର କଥା । ଆଜି ଗମ୍ଭା ପୂନିଅଁ । ସୌଭ୍ରାତ୍ର ପ୍ରତିଷ୍ଠାର ଦିନ । ଏ ଦିନରେ ଜନ୍ମ ବାସ୍ତବିକ ଆପଣଙ୍କୁ ପ୍ରକୃତିର ଏକ ଆଶୀର୍ବାଦ । ଆଉ ଆଶୀର୍ବାଦ ପାଇ ଆପଣ ପ୍ରକୃତି ଦେବୀଙ୍କୁ ନାନା ଅଳଙ୍କାରରେ ସଜାଇ ଚାଲିଛନ୍ତି ।

ଗଙ୍ଗାଧର—(ସଙ୍କୋଚଭରା ସ୍ୱରରେ) ଆପଣଙ୍କର ଅଭିନନ୍ଦନରୂପ ଆଶୀର୍ବାଦ ପାଇଁ ବିଶେଷ ଧନ୍ୟବାଦ ।

ନନ୍ଦକିଶୋର—ଆପଣଙ୍କର ବୟସ ଆଜି କେତେ ହେଲା ?
ଗଙ୍ଗାଧର—ଆଜିଠାରୁ ଊଣଶତ ପୂର୍ବେ ଚଉଦ ବର୍ଷ ଗଲାଣି ।
ନନ୍ଦକିଶୋର—ତାହାହେଲେ ତ ଆଜି ହେଲା ଆପଣଙ୍କ ସୁବର୍ଣ୍ଣ ଜୟନ୍ତୀ—
ଗଙ୍ଗାଧର—ସୁବର୍ଣ୍ଣ ଜୟନ୍ତୀ ? ଜୀବନର ପଚାଶଟି ବସନ୍ତ ବହି-ଯାଇଛି । ମରଣ ଯେପରି ଚଉଦ ପାଦ ପାଖେଇ ଆସିଛି ।
ନନ୍ଦକିଶୋର—ମନ ହୁଏ ଏ ଉପଲକ୍ଷରେ ଆପଣଙ୍କୁ କିଛି ଉପହାର ଦେଇଥାନ୍ତି । ଅନ୍ତତଃ ଗୋଟିଏ କବିତା ଆପଣଙ୍କ ନାଆଁରେ ରଚନା କରିଥାନ୍ତି । ଯଦି ଆପଣ କୌଣସି ପାଶ୍ଚାତ୍ୟ ଦେଶରେ ଜନ୍ମ ଗ୍ରହଣ କରିଥାନ୍ତେ, ତେବେ ଆଜି ଦେଶଯାକ ଆପଣଙ୍କର ପ୍ରଶସ୍ତିଗାନ ହେଉଥାନ୍ତା, କେତେ କବି ସମ୍ମିଳନୀ, କେତେ ସାହିତ୍ୟ ସଭା, କେତେ ପୁସ୍ତକ ପ୍ରଦର୍ଶନୀ ହୁଏତ ହେଉଥାନ୍ତା । କିନ୍ତୁ ଏହା ହେଲା ଓଡ଼ିଶା, ଯେଉଁଠି କବି ସାରା ଜୀବନ ଦରିଦ୍ରତା ଓ ଉପେକ୍ଷା ସଙ୍ଗେ ଯୁଦ୍ଧ କରି ହତାଶ ହୋଇ ଲୋକଲୋଚନ ଅଗୋଚରରେ ବନର ମାଳତୀ ପରି ଝରିପଡ଼େ ।
ଗଙ୍ଗାଧର—ଆଜି ଘରେ ସେଇ କଥା ପଡ଼ିଥିଲା । ଆମର ଏଇ ଅର୍ଦ୍ଧାଙ୍ଗ ମୋର ସ୍ତ୍ରୀ ମୋତେ କହୁଥିଲେ ପାଟ, ମଠା ଆଦି ଲୁଗାଠାରୁ ମଧ୍ୟ କୁଆଡ଼େ ମୋର କବିତା ମୂଷା ଓ ଉଇପୋକଙ୍କୁ ଅଧିକ ମିଠା ଲାଗେ । (ହସିଲେ)
ନନ୍ଦକିଶୋର—(ଗମ୍ଭୀର ଭାବରେ) କି ଦୁର୍ଭାଗ୍ୟ ଆମର । ଯେଉଁଠି ବନ୍ଧୁର ନାଁ ଶୁଣିଲେ ଓଡ଼ିଆ ଯୁବକ ନାକ ଟେକେ, ଯେଉଁ

ଦେଶର ପ୍ରତିଭା କୀଟଭୋଗ୍ୟ ହୁଏ, ସେ ଦେଶର ଉନ୍ନତି କେବେ କିପରି ହେବ, ସେ କଥା ମୁଁ ଭାବି ପାରେଁ ନା ।

ଗଙ୍ଗାଧର—ଆପଣଙ୍କର ଲେଖା ଲେଖି କେମିତି ଚାଲିଛି ?

ନନ୍ଦକିଶୋର—ଲେଖାଲେଖି କେବେ କେମିତି କରି 'ହିତୈଷିଣୀ' ବା 'ପ୍ରଭା'କୁ ପଠାଇଦିଏ । ଆପଣଙ୍କ କଥା କହନ୍ତୁ । ଆଜିକାଲି ତ ଆପଣଙ୍କ ଲେଖାଲେଖି ବିଶେଷ ବାହାରୁ-ନାହିଁ ।

ଗଙ୍ଗାଧର—କଥାରେ କହନ୍ତି, "କାଳରେ କବିତା କୁତଃ ।" ଅନେକ ସମୟରେ କୌଣସି କୌଣସି ବିଷୟରେ କବିତା ଆରମ୍ଭ କରି ଚାଳିଶ ପଚାଶ ଧାଡ଼ି ଲେଖି ଅସଂପୂର୍ଣ୍ଣ କରି ପକାଇ ରଖିଛି । ଘର ଜଞ୍ଜାଳରେ ପଡ଼ି କିଛି ଲେଖିବାକୁ ମନ ମଧ୍ୟ ହୁଏ ନାହିଁ । ଯାହା ଲେଖା ହୋଇ ପ୍ରକାଶ ପାଉଛି, ସେଥିରେ କିଣ ବା ସମ୍ମାନ ଆସେ, କେତେ ବା ଗୌରବ ଆସେ, କିନ୍ତୁ ସେଥିରେ କେତେ ଲୋକଙ୍କର ଚକ୍ଷୁଃଶୂଳ ହେବାକୁ ହୁଏ । କେତେ ଲେଖକ ସହ୍ୟ ନ ପାରି କଟୁ ସମାଲୋଚନା କରନ୍ତି । ସବୁ ସହିଯିବାକୁ ହୁଏ । କାରଣ ଈର୍ଷାମୂଳକ ସମାଲୋଚନା ଉଦାସୀନ ଅବଜ୍ଞାଠାରୁ ଶ୍ରେୟସ୍କର ।

ନନ୍ଦକିଶୋର—ଠିକ୍ କଥାଟିଏ କହିଛନ୍ତି । ସୁନାର ସବୁ ଗୁଣ ଥାଇ ସୁଦ୍ଧା ସବୁଦିନ ସୁନା ଗୁଞ୍ଜ ସହିତ ତୁଳିତ ହୋଇ ଆସିଛି । କିନ୍ତୁ ସେଥିରେ ସୁନାର ମୂଲ୍ୟ କିଛି କମିଯାଏ ନାହିଁ । ତାର ଦୀପ୍ତି କିଛି ଊଣା ପଡ଼େ ନାହିଁ । ଆଚ୍ଛା, ଆପଣ ମୋର

କଥାର ତ କିଛି ଉତ୍ତର ଦେଲେ ନାହିଁ । ଏବେ କଣ ଲେଖାଲେଖିରେ ହାତ ଦେଉଛନ୍ତି ?

ଗଙ୍ଗାଧର – ଲେଖାଲେଖିରେ ମନ ବଳୁ ନାହିଁ । ଭଲ କ୍ଷେତରେ ଭଲ ମଞ୍ଜି ପଡ଼ିଲେ ଶୀଘ୍ର ଗଜୁରିଉଠେ । ସେମିତି ମୋର ମନରେ ସାମାନ୍ୟ ଦୁଃଖ ବି ସତେଜ ହୋଇ ଗଜୁରିଉଠେ । ଆଜି ମନରେ ସେପରି ଦୁଃଖ ହେଲେ ଲେଖାଲେଖିରେ ମନ ବସେ ନାହିଁ ।

ନନ୍ଦକିଶୋର – ଆପଣ ଯାହା କହିଲେ ଠିକ୍ କଥା । କବିର ହୃଦୟ ସାଧାରଣ ଲୋକର ହୃଦୟଠାରୁ ଅଧିକ ଅନୁଭୂତ ଓ ସମାନୁଭୂତିରେ ଭରି ଥିବାରୁ ସହଜରେ ଭାବୁକତାରେ ଭରିଯାଏ ଓ ସେହି ଭାବୁକତାରେ ସୃଷ୍ଟିର ପ୍ରେରଣା ନ ଥିଲେ ତାହା ଶରତ୍କାଳର ମେଘଖଣ୍ଡ ପରି ଭାସି ଉଡ଼ିଭଇ ଯାଏ ।

ଗଙ୍ଗାଧର – ମୋଦ୍ୱାରା ଆଉ କଣ କିଛି ଏ ବୟସରେ ହୋଇ-ପାରିବ ବୋଲି ଆପଣ ଭାବୁଛନ୍ତି ?

ନନ୍ଦକିଶୋର—ଓଡ଼ିଆ ସାହିତ୍ୟ ଆପଣଙ୍କଠାରୁ ଅନେକ କିଛି ଆଶା କରି ଅନେଇ ବସିଛି । ଆପଣଙ୍କୁ ଲୋକେ କହନ୍ତି ପ୍ରକୃତିର କବି । ମୁଁ କିନ୍ତୁ କହେଁ ଆପଣଙ୍କର ସ୍ଥାନ ବର୍ଣ୍ଣନାଠାରୁ କାହାଣୀ ଘଟନାର ବର୍ଣ୍ଣନାରେ, ନିସର୍ଗ ସୌନ୍ଦର୍ଯ୍ୟ ବର୍ଣ୍ଣନାଠାରୁ ମାନସ ସୌନ୍ଦର୍ଯ୍ୟ ଚିତ୍ରଣରେ ଆପଣଙ୍କର ଶକ୍ତି ଅଧିକ ପରିସ୍ଫୁଟ ହୋଇଛି । ଏ ଦିଗରେ କିନ୍ତୁ ଆପଣ ଓଡ଼ିଶାକୁ ଦେଇଛନ୍ତି କେବଳ 'କୀଚକବଧ' ।

ଗଙ୍ଗାଧର—ଆଜ ଆପଣ ମୋଠାରୁ କଣ ଚାହାଁନ୍ତି ? ମୋର ବା ଆଉ ଉପରକୁ ଉଠିବାର ଶକ୍ତି କାହିଁ ?

ନନ୍ଦକିଶୋର—ଦେଖନ୍ତୁ । ଶୁଣନ୍ତୁ । ଆଧୁନିକ ଉତ୍କଳ ସାହିତ୍ୟରେ ଆଦର୍ଶ ଚରିତ୍ର ଚିତ୍ରଣ ଏ ପର୍ଯ୍ୟନ୍ତ କିଛି ହୋଇ ନାହିଁ । କବିବର ରାଧାନାଥଙ୍କ ରତ୍ନାବଳୀର ଭଣ୍ଡାର ଗ୍ରନ୍ଥାବଳୀରେ ଯେଉଁ ଅଭାବ ରହି ଯାଇଛି, ତାହାର ପୂରଣ କିପରି ହେବ ? କିଏ କରିବ ତାହା ? 'କୀଚକ ବଧ'ରେ ଆପଣ ସୁନ୍ଦର ମାଟିର ମୂର୍ତ୍ତି ଗଢ଼ି ଥୋଇଛନ୍ତି । ଏଣିକି ସୁନାର ପ୍ରତିମା ଗଢ଼ିବାରେ ମନ ଦିଅନ୍ତୁ ।

ଗଙ୍ଗାଧର—କିନ୍ତୁ ମୁଁ ଯେ କୁମ୍ଭାର । ସୁନାର ମୂର୍ତ୍ତିର ସୂକ୍ଷ୍ମ କାରୁକାର୍ଯ୍ୟ ମୋଦ୍ୱାରା ସମ୍ଭବ ହେବ କି ?

ନନ୍ଦକିଶୋର—( କ୍ରମେ କ୍ରମେ ଉତ୍ତେଜିତ ହୋଇ ) ଆପଣଙ୍କ ନାଁ ପରା ଗଙ୍ଗାଧର ? ଅନନ୍ତ କୋଟି ନର ଜୀବଙ୍କ ମୋକ୍ଷ ଦେଉଥିବା ପତିତପାବନୀ ସୁରଧୁନୀ ଦିନେ ଗଙ୍ଗାଧରଙ୍କ ଜଟା ଜାଲରୁ ବାହାରିଥିଲେ ପରା ? ପାର୍ବତୀ, ନନ୍ଦକେଶ୍ୱରୀ, ଗଙ୍ଗେଶ୍ୱରଙ୍କ କଳୁଷକୁ ଧୌତ କରି ଓଡ଼ିଆ ସାହିତ୍ୟକୁ କିଏ ଦେବ ଅପାପବିଦ୍ଧ ପୁରୁଷୋତ୍ତମ ଓ ବହ୍ନିସ୍ନାତା ଜ୍ୟୋତିର୍ମୟୀ ଦେବୀମୂର୍ତ୍ତି ? ଦେଇପାରେ ଆପଣଙ୍କର କଳ୍ପନା, ଦେଇପାରେ ଆପଣଙ୍କର ତପସ୍ୟା ।

ଗଙ୍ଗାଧର—(ଧୀର ଶାନ୍ତ ଭାବରେ) ଏହା କଣ ସମ୍ଭବ ହେବ ମୋ ପକ୍ଷରେ ।

(ଉଭୟେ ଚନ୍ଦ୍ରାମଗ୍ନ ଓ ନୀରବ ହୋଇ କଛିକ୍ଷଣ ବସିଲା ପରେ)

ନନ୍ଦକିଶୋର—ଆଜ୍ଞା, ମୁଁ ଉଠେଁ ଏଥର । ବହୁତ ଗପିଗଲି ।

ଗଙ୍ଗାଧର—ଓଃ, ମୁଁ ଯେ ଭୁଲି ଯାଉଥିଲି । ବାବୁ ଭଗବାନ୍, ଯୋଗେଶ୍ୱର । ପାନ ଆଣ ତ ।

( ଯୋଗେଶ୍ୱର ଥାଳିଆରେ ପାନ ଆଣିଦେଲେ ।)

ନନ୍ଦକିଶୋର—ଏଟା କଣ ଆପଣଙ୍କର ପୁଅ । ଇସ୍କୁଲ୍‌ରେ ଏଙ୍କୁ ଦେଖିଲି ପରି ମନେ ହେଉଛି ।

ଗଙ୍ଗାଧର—ଇଏ ହେଉଛି ମୋର ଦୂର ସମ୍ପର୍କୀୟ ପୁତୁରା । ନା ହେଉଛି ଯୋଗେଶ୍ୱର ମେହେର । ପାଟନାରୁ ଆସି ପଢୁଛି ସେକେଣ୍ଡ କ୍ଲାସରେ ଜିଲ୍ଲା ସ୍କୁଲ୍‌ରେ ।

ନନ୍ଦକିଶୋର—ପଢ଼ାପଢ଼ି କେମିତି କରୁଛ ? ଆଉ ଆପଣଙ୍କର ପୁଅ ?

ଯୋଗେଶ୍ୱର—ଭଗବାନଙ୍କେ ଏବଛନ୍ ଫେର୍ ଜର୍ ଦେଲନେ । କୁଷ୍ଟୁଛନ୍ତି ଶୀତେଁ ।

ନନ୍ଦକିଶୋର—ହଉ ଥାଉ । ଆଜ୍ଞା ଆପଣ ମୋ କଥା ଟିକିଏ ଭଲ କରି ଭାବି ଦେଖିବେ । ନମସ୍କାର (ବିଦାୟ) ।

ଗଙ୍ଗାଧର—ନମସ୍କାର ।

( ନନ୍ଦକିଶୋର ଚାଲିଗଲା ପରେ )

ଗଙ୍ଗାଧର— ( ଇତସ୍ତତଃ ପଦଚାରଣା କରି ) ଅପାପବିଦ୍ଧ ପୁରୁଷୋତ୍ତମ, ଜ୍ୟୋତିର୍ମୟୀ ଦେବମୂର୍ତ୍ତି ? କିଏ ସେ ? କାହିଁ ? ମୋର କଳ୍ପନା ? ମୋର ତପସ୍ୟା ? ତପସ୍ୱିନୀ ? 'ତଟୀଷୁ ବିନ୍ଦୁସ୍ତର‌ଂ ମୋହାଦୁଦ୍ଭୂପେନାପି ସାଗରେ' ।

ନାଃ, ହେବ ନାହିଁ । ଆଜି କେତେ ଦିନ ବା ଅଛି ମୁଁ ? ଆଜି ଚତୁର୍ଦ୍ଦଶ ହେଲା । ଚତୁର୍ଦ୍ଦଶ । ସୁବର୍ଣ୍ଣ ଜୟନ୍ତୀ ? ମିଳିଥାନ୍ତା କେତେ ଉପହାର ! ମିଳିଛି, ମିଳିଛି ଭଗବାନର ପାଳିଙ୍କର ।

ଯୋଗେଶ୍ୱର—( ପଢ଼ିଆଡ଼ୁ ) ମଉସା, ସେ mensuration ଖଣ୍ଡିକ···

ଗଙ୍ଗାଧର—( ସମ୍ବୃତ ହୋଇ ) ହଁ । ଖାତାଟା ଆଣ । ଭଗବାନ୍‌ଙ୍କ ଫେର୍ କର୍ ଦେଲା । ଏତେ ଖରଚ ପାଉଥି ନାନାଜାତି ହୋଇଗଲା । ଖାଇଲା ନେ କ ନହେ ।

ଯୋଗେଶ୍ୱର—ନାଇଁ ଖାଇ ।

ଗଙ୍ଗାଧର—ମାଉସୀଙ୍କ କହ ସାଗୁଦାନା ଟିକେ ଘାଣ୍ଟି ଦେବେ । ( ପୁଣି ବାକ୍‌ସ ପାଖରେ ବସି ଚିନ୍ତା କରି )

ABCD ହେଲା ଟ୍ରାପିଜିଅମ୍ । AB ଆଉ CD ସମାନ୍ତର । C ରୁ ଯଦି AD ସଙ୍ଗେ ସମାନ୍ତର ସରଳରେଖା କଟାଯାଏ... ( ବାହାରୁ ଶୁଣାଗଲା ) ମୁକ୍ତସୀ ବାବୁ ଘରେ ଅଛନ୍ତି ?

ଗଙ୍ଗାଧର—କିଏ ?

( ବାହାରୁ )—ମୁଁ ଅନିରୁଦ୍ଧ ମେହେର ।

ଗଙ୍ଗାଧର—( ଉଠିପଡ଼ି ) ଆସ ଆସ କେଣ୍‌ଆଡ଼ୁ ଆଇଲ ? (ଘରକୁ ପ୍ରବେଶ କଲେ ଜଣେ ମଧ୍ୟବୟସ୍କିଆ ଝୁଲୁପ୍‌ବାଳିଆ ମେହେର । କାନ୍ଧରେ ଗୋଟିଏ ଘରର ଉଭୟ ଆଡ଼େ ଟୁପାରେ ଅନେକ ରଙ୍ଗର ଲୁଗା ( ଶାଢ଼ୀ ) ଧରି । ଘର ଓହ୍ଲାଇ ଦେଇ )—ମୁକ୍ତସୀ ବାବୁ, ଜୁହାର୍ ।

ଗଙ୍ଗାଧର—ଜୁହାର୍, ଜୁହାର୍ । କେଉଁ ବାହାର୍‌କୁ ନେ ବର୍‌ପାଲି ଅଁ ।

ଅନିରୁଦ୍ଧ—ଅପର୍ ଦିନୁ ବାହାରି କରି ଇଠା ବୁଲି ବୁଲି ଆଉଛେଁ ପରେ । ଯାହା କହ ଆଜ୍‌କାଲ୍ ଆଉ ଦକ୍ଷ ନାଇଁ ମିବାର୍ କପ୍‌ଡାଲନ୍ତା ।

ଗଙ୍ଗାଧର—ଆଉ ଆମର୍ ଘରର୍ ହାଲ୍‌ଚାଲ୍ ?

ଅନିରୁଦ୍ଧ—କାଣା କହୁମି ଦୁଃଖର୍ କଥା । ଫେର୍ ହାଏଜା ଲଗିଥିଲା ବଚ୍‌ସରିକ ଆଉର୍ ଆଗର୍ ପାଖର୍ ପାଲି ସ୍ଥାନ-ମାନ୍‌କେ । ଗାଁ ଗୁଡ଼ା ସବୁ ଉଜ୍‌ଡିଗଲା । ତୁମର୍ ଘରେ ଯେନ୍ ଗୁଡ ପିଲା ଶୁଉଥିଲା, ତା'ହାଙ୍କ ହାଏଜା ଧରିଲା ଯେ ଏଖେଇ (ଟୋକିଏ) ସବୁକେ ନେଇ ଗଲା । ତୋର୍ କନିଆ ଏବେନ୍ ତୁମର ଗାଏ ବୋଦ୍ ସଂସାର୍ କରୁଛି । ତୁମେ ଘରେ ଯାଇ କରି ବନ୍ଦୋବସ୍ତ୍ କରି ନୂଆଁ ଗୁଡି ନାଇଁ ଧରିଲେ ନାଇଁ ଚଳେ ।

ଗଙ୍ଗାଧର—ହାଏଜା ଏବେ ବି ଲଗିଛେ କାଏଁ ?

ଅନିରୁଦ୍ଧ—ନାଇଁ । ଇ ଦିନା ଆଠ ହେଲାନେ ଛାଡ଼ି ଗଲାନି । ସେଥିଲାଗି ବଲି ତ ମୁଇଁ ଗାଁ ବୁଲି ବାହାରିଛେଁ । ନାଇଲେ ସବେ ଧୁର୍ ଧୁର୍ ମାର୍ ମାର୍ କରୁଥିତେ ।

ଗଙ୍ଗାଧର—ଇନେ ତ କାମର ଲଗି ବରପାଲି ଯିବାର ମୁସ୍କିଲ ହେଉଛେ । ଖେଁଦ ବାଡ଼ିର ଆଶା ସବୁ ମୁଇଁ ଛାଡ଼ି ଦେଇଛେଁ । କାଲି ହେଡ୍‌ମାଷ୍ଟର୍ ମଦନ୍ ବାବୁର୍ ନିକେ

ଚିଠିଟେ ଲେଖି ଦେମି ଯେ ସେ ଗୃହର୍ କେଟହନ୍‌ସି ବନ୍ଦବସ୍ତ୍ କରିଦେବେ ।

ଅନିରୁଦ୍ଧ—ମୁହ୍ଣର ବାବୁ ! ଗୃଷ୍ଠା ନିଜେ ନାଇଁ ଦେଖିବ ବଇଲେ ନାଇଁ ଚଳେ । ତୁମର ଲଗି କିଏ ସମ୍ଭାଳି ଦେବା ତୁମର୍ ଘର୍ ଆଉର୍ ନିଝା ?

ଗଙ୍ଗାଧର—ଭାଇ, ନିଜକର କଥା ତ ଜାନୁଛ । ମୋର୍ କାଏଁ ଜଗର୍ ଅଛେ ? ଛୁଟି ମିଲ୍‌ଲା ଭାଏଲ୍ ଯାଏଛ । ଆଉ ଯାଇଁ କରି ତ ଦୁଇ ଦିନ୍ ଗୃର୍ ଦିନେ କାଣା କର୍‌ମି ? ସବୁ ଭଗବାନ୍ ଭରସା ।

ଅନିରୁଦ୍ଧ—ଆଜ୍ଞା, ଭଗବାନ୍‌କେ ଗାଁକେ ପଠେଇ ଦିଅ ନାଇଁ ଯେ, ସେନେ ରକ୍ଷା କରି ଜମିବାଡ଼ି ଦେଖାଦୁଖି କରୁନ୍ । ମୁଇଁ କାଲି ରେମଣ୍ଡା ବାଟେ ଆଇଲି, ତୁମର୍ ସମ୍‌ଧେନ୍ କରୁଥିଲେ ବଡ୍ ନୈକୁଳକେ କେତେ ବନ୍ଦନା ନେଇ ଆଇବେ ବଲି । ବାବୁର୍ ବନ୍ଦ୍‌ନା କରିଦିଅ ଆଉର୍ ଗାଁ ଥି ରଖେଇ ଦିଅ । ଘର ଦୁଆର୍ ସମ୍ଭାଳୁନ୍ ।

ଗଙ୍ଗାଧର—ଠିକ୍ କହୁଛ ଯେ । ବାବୁକେ ତ ଆଠ ଦିନ୍ ଜର୍ ବଏଲେ ଆଠଦିନ୍ ଆମଣାଥି ରହୁଛନ୍ତି । ଆଜ ଦେଖୁଛୁ ତ କେତେବେଳେ ହାଏଜା ଲାଗ୍‌ଲେ ଗାଁ ଯାକର୍ ସଫା । ଚୁନ୍‌ଟେ ବଳି ତ ପୁଅ । ଇନ୍ଦ୍ରା ଅବସ୍ଥାଥି ତୁଆ ବଡ୍ ନୈକୁଳେ ଦେଇ କରି କେନ୍ତେଇ ତାହାଙ୍କ ଗାଆଁକେ ପଠେଇ କରି ରହି ପାର୍‌ମି । ସବେ ବଲ୍‌ବେ ପିଲାକେ ଭିନେ କରି ଦେଲା ।

ଅନିରୁଦ୍ଧ—ପୁଅ ଜମିବାଡ଼ ସମ୍ଭାଳିଲେ ଭଗେ କଷ୍ଟ ଦେଲ ବଳି
କହୁବେ । କେନ୍ତା କଥା କହୁଛ ମୁଦ୍ଗର ବାବୁ ?

ଗଙ୍ଗାଧର—ଆରେ ଯୁବଗଣର୍—ମାଉସୀକେ କହ ବଡ଼ ଦୁହାଁ ଭକ୍ତ
ଦେଉନ୍ । ଆଉର୍ ଆମର୍ ଦୁଷ୍ଟକର୍ ଲଗି ଇନେ ପଖାଳ୍
ବଡ଼ାବଢ଼ି କର ।

ଯୋଗେଶ୍ୱର—( ପ୍ରବେଶ କରି ) ତିଉନ୍ ପତ୍ତର୍ ସବୁ ଅଛେ ।
ବଡ଼ାବଢ଼ି କର୍‌ମା ?

ଗଙ୍ଗାଧର—ହଁ । ଉଠ ଅନି । ଦିନ୍‌ଯାକର୍ ବୁଲି ବୁଲି ଅଥା ହେଇ
ଯାଇଥିବ ନେ । ଖୁଆପିଆ କର୍‌ମା ଉଠ । ଆରେ
କେତେନ ପିଡ଼ା ପାନି ଦିଅ ।

( ମଞ୍ଚରେ ଦୁଇଟି ପିଡ଼ା ପକାଇ ଦୁଇ ଖୁରି ପଖାଳ୍ ଓ ତିଅଣ
ଆଦି ଆଣି ଯୋଗେଶ୍ୱର ମଡାଇ ଦେଲେ । ଗଙ୍ଗାଧର
ଓ ଅନିରୁଦ୍ଧ ହାତଗୋଡ଼ ଧୋଇ
ଖାଇବାକୁ ବସିଲେ । )

ଅନିରୁଦ୍ଧ—(ଖାଉଁ ଖାଉଁ) ବଢ଼ିଆ ହେଇଛେ ତୁମର୍ ଦାଏଲ୍
ତୁନ୍ ଆଜର୍ ବଡ଼ ଭଲା ।

ଗଙ୍ଗାଧର—ଜାଣା କର୍‌ବ ଗରିବ ଲୁକ କେହେନ୍‌ସି ରକ୍‌ମେ
ଚଲି ଯାଉଛେ ।

ଅନିରୁଦ୍ଧ—ଆଛା, ଗୁଟେ କଥା କହୁମି । କାଲି ସଭ ଇନ୍ତା
ବେଲ୍‌କେ ମୁଇଁ କୁମେଲ୍‌ସିଂହା ଗୌନ୍ତିଆ ଘରେ ପହଞ୍ଚି
ଥାଏଁ । ମୁଇଁ ବର୍‌ପାଲର୍ ଲୁକ ଆଜର୍ ମୁଦ୍ଗର ବାବୁ—
ତୁମର୍ ନାଁ ଧରିକରି—ତାକର୍ ଘର୍ ପାଟର୍ ଚନ୍ଦାର୍-

ଜମାର୍ ଲୁକ ବଲ ଯେତେବେଲେ ଗଡ଼ିଗଡ଼ିଆ ଜାନ୍‌ଲେ; ମତେ କ୍ଷ୍ୟାଁ ବାଗିର୍ ଆଦାର୍ କଲେ । ମୁଇଁ ଥିର୍ କିକେ ମାଗିଲି ବଏଟଲି ସେମାନେ ଦାଏଲ୍, ମୁନ୍‌ଗାଶାଗ୍, ଝୁରି ଭଜା କରି ଖାଇବାକେ ଦେଲେ, ଆଉର୍ ତୁମର୍ କଥା କେତେ ପଚାରୁଥାନ୍ ।

ଗଙ୍ଗାଧର୍—ହଁ ? ଏତେ ଆଦାର୍ କଲେ ?

ଅନିରୁଦ୍ଧ—ହଁ, ତୁମର୍ କଥା କେତେ ପଚାରୁଥାନ୍ । ତମେ ପଦେର ଗୀତ୍ କେ ଲେଖି କରି କେତେ ଗେଜେଟ୍‌ଥି (ଖବର୍ କାଗଜ୍‌ରେ) ଛପାଲ ନେ ? ବଡ଼୍ ବଡ଼୍ ଲୁକେ ପଢ଼େରେ ଏଡ଼େ ତୁମର୍ ଗୀତ୍ ପଢ଼ି କରି ଖୁସି ହେଇ ଯାଉଛନ୍ ?

ଗଙ୍ଗାଧର୍—ତୁମେ କାଁ ବଏଲ ?

ଅନିରୁଦ୍ଧ—ମୁଇଁ ବଇଲି ମୁଇଁ ତ ଗେଜେଟ୍ ପଡ଼େ ନାଇଁ କାହୁଁ ଜାନ୍‌ମି ମୁହୁରି ବାବୁର୍ କଥା । ବାକି ଏଡ଼େ ବଡ଼୍ ବଡ଼୍ ପାଳି ରଜାଘରେ ଯେତେବେଲେ ମୁହୁରି ଜାମ୍ ଟିକିଛନ୍, ଇସ୍ତାମ୍ ଭି ଲେଖାଲେଖି କରୁଛନ୍, କେତେ-ବେଲେ କେଜାନି ଗୀତ୍ ଗୁଟା ଭି ଲେଖି ପକାଉଥିବେ ବଲି କହିଲି । ଆଉର୍ କହିଲି ମୁହୁରି ବାବୁ ଭଗବତ୍ ଗ୍ରନ୍ଥ ଟନେ (ଭଲ) ଗାଏସନ୍ (ଭଲ ଗାଆନ୍ତି) ।

ଗଙ୍ଗାଧର୍—ଗଉନ୍ତିଆ ଘରେ ଆମର ଭୁଲିଆ ଜାଉ ନାଇଁ ?

ଅନିରୁଦ୍ଧ—ହଁ । ଆଉର୍ ମତେ ଆଜଟ୍ କରି କହିଲେ କେଭେ ହେଲେ ମୁହୁରି ବାବୁକେ ଆମର ଗାଁକେ ନାଇଁ ଡାକି ଆନ୍‌ତ ? ସତ କହୁଛେଁ ମୁହୁରି ବାବୁ ତୁମେ ସେ ଗାଁକେ

ଯାଏଚ ବଏଲେ ଜୁଏଁ ବାଗିର୍ ଆଦର୍ ପାଏଚ । କହ, ତୁମର୍ ଛୁଟି ଦିନ ଦେଖିକରି ଯିବ ବଏଲେ ମୁଇଁ ଭି ସେଦିନ ଆଇମି । ସଙ୍ଗ୍ ହେଇ କରି ଯିମା ।

ଗଙ୍ଗାଧର—କାହାର ଘରେ କୁନୁଆ ହେବାକେ ମତେ ବଡ଼ା ଲଜ୍ ଲଗ୍ସି । ଆଉର୍ ଦେଖ । ଆମେ ତ ଗରିବ ଲୁକ । କେହି ଘର୍ କେ କୁନୁଆ ପଦ୍ଧିଗଲେ, ତାହାକେ ଭଲ୍ କରି ମୁଠେ ଖୁଆବାର୍ ଶକ୍ତି ନାଇଁ । ଘରେ ଦୁଇ ଗୃହ୍ ଦିନ୍ ରଖ ବଲ୍ ବାର୍ ଲଗି ଜାଗାଟାନ୍ ନାଇଁ । କେତେ ବଡ଼୍ ଲୋକ୍, ଗଉଁତିଆ, ଜମିଦାର୍, ରଜା ଘରେ ଡାକ୍ଷନ୍ ମତେ ଆଦର୍ କରି । ବାକି ଆମେ ତ ଗରିବ୍ ଲୁକ । ବଡ଼୍ ଲୋକ୍ ଘରର୍ ଶିକାର୍ ଚଲଉ ଭାତ୍ ଆମର ପେଟେ କାହିଁ ହଜମ୍ ହେବା ? ସେମାନ୍ କର୍ ଆଦର୍ ପାଏଲେ ମତେ ମୁଇଁ କେତେ ଗରିବ୍, ସେଟା ବୁଝି ପାରସିଁ । ଆଉର୍ ତାକର୍ ଲଗ୍ (ରିଣ) ମୁଇଁ କେଭେ ଅସୁଲ୍ ଦେଇ ନାଇଁ ପାରେଁ ବଲି ଭାବ୍‌ସିଁ । ମୋର୍ ଭି ଯଦି ହବ୍‌ଲି ମହଲ୍ ଥାଏନ୍ତା ବଏଲେ, ମୁଇଁ ଭି ରଜା ଜମିଦାର୍-ମାନ୍‌କୁ ଡାକି କରି ଘରେ ମିଠେଇ ଖୁଆନ୍ତି । ଖୁଏଇ ପାରେ ନାଇଁ ବଲି ଖାଏଁ ନାଇଁ; ଲଜ୍ କରସିଁ ।

ଅନିରୁଦ୍ଧ—ଆଚ୍ଛା, ଗଉଁତିଆ ଘରେ ତୁମ୍ କୁ ଡାକି ଆଇଲେ ଯିବ କି ନାଇଁ ।

ଗଙ୍ଗାଧର—ଦେଖ ଅନିରୁଦ୍ଧ । ରଜା ମହାରଜାମାନେ ବଡ଼େ ବଡ଼େ ହବ୍‌ଲି ମହଲ୍ ମାନ୍ କେ ରହୁଛନ୍ । ବାକି ତାକର୍

ମନେ କେତେବେଳେ ଶାନ୍ତି ନାହିଁ । ଶାନ୍ତି ଅଛି ଆମର୍ ଇ କୁଡ଼ିଆ ଘର୍‌ମାନ୍‌କେ । ଯେ ଲକେ ଟଙ୍କା ଜମଉଛେ ସେ ଆଉର୍ ଲୋକେ କେନ୍ତେଇ ହେବା ବଲି ଭାବୁଛନ୍ତି, ମୂର୍ଖ ଗରିବ୍ ହେଇକରି ଭି ଭାବୁଛେଁ ଭଗବାନ୍ ମତେ ସବୁ ଦେଇଛନ୍ । ଦାଲି ଆଉର୍ ବଡ଼ି ଲୁନ୍ ଖାଇ କରି ମନେ ଖୁସି ଲାଗୁଛେ । ଶିକାର ଭାତ୍ ଯେନ୍‌ମାନେ ରୋଜ୍ ଖାଉଛନ୍, ସେମାନେ ଯାଇକରି ଡାକ୍ତର୍‌ନେ ପେଟ୍ ଟିପେଇ ହେଉଛନ୍ । କୃଷ୍ଣ ମହାପ୍ରଭୁ ବିଦୁର ଘରୁ ଶାଗ ଖାଇ କରି ସନ୍ତୋଷ ହେଇଥିଲେ । ଇନ୍ତେଇ ଇ ଅବସ୍ଥାଥି ପଚିଶ୍ ବରଷ୍ ଚଲିଗଲାନେ । ଚଲିଯାଉଛେ ଦୁଃଖେ ସୁଖେ, ଆଉ କେତେ ବରଷ୍ ଇନ୍ତେଇ ଚଲିଗଲେ ହେଲା । ଇଥିର୍ ଲଗି କେତେ ହର୍‌ବର୍ ହେମା । ନାହିଁ ଯାଉଁ କାହିଁ ।

( ଇତିମଧ୍ୟରେ ଉଭୟଙ୍କର ଖିଆପିଆ ସରିଯାଇଛି । ଖିଆପିଆ ଓ ମୁହଁ ଧୁଆ ଆଦି ସରିଲା ପରେ ରଙ୍ଗମଞ୍ଚରେ ଦୁଇଟି ଖଟ ପକାଇ ଗଙ୍ଗାଧର ଓ ଅନିରୁଦ୍ଧ ଶୋଇବାକୁ ଗଲେ । ଗଙ୍ଗାଧର ଶୋଇଲାବେଳେ ଗୋଟିଏ ବହି ଧରି ପଢ଼ୁଁ ପଢ଼ୁଁ ଶୋଇ ପଡ଼ିଲେ, କିଛି ସମୟ ପରେ ପ୍ରକୃତ ଗୋଟିଏ ନାରୀମୂର୍ତ୍ତିଙ୍କର ଆବିର୍ଭୂତା ହେଲେ । ଦେହରେ ଧଳା ବନାରସୀ ଶାଢ଼ୀ, ସୁନା ଫୁଲ ଧଡ଼ି ଥିଲା । ସବୁ ଅଙ୍ଗରେ ବହୁ ମୂଲ୍ୟ ଅଳଙ୍କାର ଓ ମୁଣ୍ଡରେ ମୁକୁଟ । ବୟସ ପ୍ରାୟ ୩୦।୩୫ ହେବ । ନାରୀମୂର୍ତ୍ତି ଗଙ୍ଗାଧରଙ୍କ ଖଟ ପାଖକୁ ଆସି ଡାକିଲେ ।)

"ଗଙ୍ଗାଧର, ଗଙ୍ଗାଧର"

ଗଙ୍ଗାଧର—(ନିଦ ବାଉଳାରେ) କିଏ ? କିଏ ତୁମେ ?

ନାରୀମୂର୍ତ୍ତି—ଉଠ ।

ଗଙ୍ଗାଧର—(ଉଠି ପଡ଼ି, ଆଖି ମଳି) କିଏ ? (ହଠାତ୍ ଠିଆ ହୋଇ ପଡ଼ି) ମୁଁ କଣ ସ୍ୱପ୍ନ ଦେଖୁଛି ?

ନାରୀମୂର୍ତ୍ତି—ତୁମେ ସ୍ୱପ୍ନ ଦେଖିବା ଭୁଲି ଯାଇଛ ଏକେବାରେ ଗଙ୍ଗାଧର । ତୁମେ ଆଜ କେତେ ଦିନ ଏମିତି ଶୋଇ ରହିବ ? ଉଠ ସ୍ୱପ୍ନ ଦେଖ । ଦୁନିଆକୁ ତୁମର ସ୍ୱପ୍ନରେ ସୁନ୍ଦର କର ।

ଗଙ୍ଗାଧର—(ନିରୀକ୍ଷଣ କରି) ତୁମେ ତ ଠିକ୍ ମୋର ମାଆ ପରି ଦେଖାଯାଉଛ । (ପଦଧୂଳି ନେଇ) ମୁଁ କଣ ସ୍ୱପ୍ନ ଦେଖୁଛି ?

ନାରୀମୂର୍ତ୍ତି—ନା, ନା, ମୁଁ ତୁମର ମାଆ ନୁହେଁ । ତୁମେ ମୋତେ ବହୁବାର କଳ୍ପନା ନେତ୍ରରେ ଦେଖିଛ, କିନ୍ତୁ ଆଜି ଚିହ୍ନି ପାରୁନାହଁ । ମୁଁ କେବେ ତୁମ ଆଗରେ ଦେଖା ଦେଇଛି ବସୁଧାର ଏକମାତ୍ର ସୁନ୍ଦରୀ ଉତ୍କଳଲକ୍ଷ୍ମୀ ରୂପେ, କେବେ ଦେଖା ଦେଇଛି ନିସର୍ଗ ସୌନ୍ଦର୍ଯ୍ୟମୟୀ ପ୍ରକୃତି ରୂପରେ, ଆଜ ତୁମେ ମୋତେ କେତେ ନୂଆଁ ନୂଆଁ ବେଶ ଭୂଷାରେ, କେତେ ନୂଆଁ ଅଳଙ୍କାରରେ ସଜାଇ ଦେଇଛ । ଆଜି କିନ୍ତୁ ତୁମେ ମୋତେ ପୁରାପୁରି ଭୁଲିଯାଇଛ ।

ଗଙ୍ଗାଧର—ନା, ନା, ଭୁଲିନାହିଁ । ଏଇ ସଞ୍ଜବେଳେ ତୁମର କଥା ପଡ଼ିଥିଲା । ଆଜି ମୋର ଜନ୍ମଦିନ । ମୋର ଜନ୍ମଦିନରେ କେତେ ଆଶୀର୍ବାଦ ପାଉଥିଲି ତୁମଠାରୁ । କେତେ

ପିଠାପଣା ଖୁଆଉଥିଲ ମୋତେ । ମୁଁ ଆଜ ତୁମର ପୂଜା କରିବାକୁ ଚାହେଁ । ତୁମକୁ ଶ୍ରଦ୍ଧାଞ୍ଜଳି ଦେବାକୁ ଚାହେଁ । କିନ୍ତୁ କିପରି ପୂଜା କରିବ ଜାଣିପାରୁ ନାହିଁ, ସିନ୍ଦୂର, ଧୂପ, ଦୀପ, ନୈବେଦ୍ୟ, ଆସନ କିଛି ନାହିଁ ।

ପ୍ରକୃତ—ଦରକାର ନାହିଁ ସେ ସବୁ । ବାହ୍ୟ ଉପଚାରଠାରୁ ମନର ଭକ୍ତି ହିଁ ବଡ଼ କଥା । ଆଜି ପରା ତୁମର ଜନ୍ମଦିନ । ଜାଣ ତୁମେ ଆଜି ପଚାଶ ବର୍ଷରେ ପାଦ ଦେଇଛ ?

ଗଙ୍ଗାଧର—ହଁ ସେହି କଥା ତ ଆଜି ପଡ଼ୁଥିଲି । ହଁ ଉଣଚାଳିଶି ଦୀର୍ଘ ବର୍ଷ ପାର ହୋଇ ଯାଇଛି । ସଂସାରର ଅନାସକ୍ତି ଆସି-ଯାଇଛି । ଅନ୍ତର୍ବେଦନା ମୋର ଚିର ସହଚରୀ ହୋଇଛି । ଜରା ମୋର ପାଖକୁମାଡ଼ି ଆସୁଛି । ମୁଁ ଜାଣେନା ମୋର ଜୀବନ ନଦୀ ଆଉ କେତେ ଦୂରରେ କାଳ ସମୁଦ୍ରରେ ମିଶିବ ।

ପ୍ରକୃତ—ଜୀବନର ଯାତ୍ରା ପଥରେ ତୁମେ କଣ କ୍ଳାନ୍ତ ହୋଇ ପଡ଼ୁଛ ଗଙ୍ଗାଧର ? ଯେଉଁ ଅହଲ୍ୟାସ୍ତବ, ଇନ୍ଦୁମତୀ, କୀଚକବଧରେ ତୁମେ ଦିନେ ମାତୃଭାଷାକୁ ଏକ ନୂତନ ଆଶାର ଆଲୋକ ଦେଖାଇଥିଲ, ସେ ଆଲୋକ ଆଜି ଏତେ କ୍ଷୀଣ କାହିଁକି ? ତୁମର ଅମୃତଭରା ଲେଖନୀ, ଆଜି ଏପରି ମୂକ କାହିଁକି ? ଜଡ଼ କାହିଁକି ?

ଗଙ୍ଗାଧର—କଣ କରିବ ମୁଁ ? ଯେଉଁ ଫୁଲଗଛ ମୁଁ କୋଡ଼ିଏ ବର୍ଷ ପୂର୍ବେ ରୋପିଥିଲି ବହୁତ ଆଶା କରି, ସେଥିରେ କଢ଼ ସୁଦ୍ଧା ଧରୁ ନାହିଁ । 'ଇନ୍ଦୁମତୀ,' 'କୀଚକବଧ'କୁ କବିମାନେ

ରାଧାନାଥ ଖୁବ୍ ପ୍ରଶଂସା କରିଥିଲେ । ଏବେ ବି କେହି କେହି ମୋ ଆଗରେ କହନ୍ତି ଖୁବ୍ ଭଲ ବହି । କିନ୍ତୁ ପଢ଼ିବା ଲୋକ କେହି ନାହାନ୍ତି । ମୋର ହୃଦୟର ହାହାକାର ଭରି କେତେ କବିତା ପେଡ଼ି ଭିତରେ ବନ୍ଦ କରି ରଖିଛି । କିଏ ପଢ଼ିବ ମୋ କବିତା ? ବର୍ଷ ପରେ ବର୍ଷ ଗଡ଼ି ଚାଲି ଯାଏ । ପ୍ରକାଶିତ ପୁସ୍ତକ ପାଠକ ଅଭାବରୁ ପେଡ଼ିରେ ପଡ଼ି ରହେ । ଅପ୍ରକାଶିତ ରଚନା ନୈରାଶ୍ୟରେ ସଢ଼େ । ମନୁଷ୍ୟଠାରୁ ମୂଷାର ଆଗ୍ରହ ସେଇ ବହିମାନଙ୍କ ପ୍ରତି ଅଧିକ ଚଢ଼େ । ତଥାପି ତୁମେ କହିବାକୁ ଚାହଁ ଯେ ମୋର ଲେଖାରେ ଅମୃତ ଅଛି ?

ପ୍ରକୃତି—ବନ ମଧ୍ୟରେ ଫୁଟିଥିବା ଗୋଲାପ ଫୁଲର ବର୍ଣ୍ଣଗନ୍ଧର କଣ କିଛି ମୂଲ୍ୟ ନାହିଁ ? କାନ୍ତାରରେ ପଡ଼ିଥିବା ହୀରାର କଣ କିଛି ମୂଲ୍ୟ ନାହିଁ ? ତୁମର କବିତା ଆଜି ହୁଏ ତ ଉପେକ୍ଷିତ, କିନ୍ତୁ ଦିନ ଆସିବ...

ରାଧାନାଥ—ସେଦିନର ଅପେକ୍ଷାରେ ବସି ବାଳ ପାଚିଲାଣି । ଗୋଲାପ, ହୀରା—ଏସବୁ ନିର୍ଜୀବ ଦ୍ରବ୍ୟ । କିନ୍ତୁ ମୁଁ ଜଣେ ମନୁଷ୍ୟ । ଉପେକ୍ଷା, ନୈରାଶ୍ୟ କେତେଦିନ ଜଣେ ମନୁଷ୍ୟକୁ ବଞ୍ଚାଇ ରଖିପାରେ ?

ପ୍ରକୃତି—ତୁମେ କେବଳ ମାତ୍ର ଜଣେ ମନୁଷ୍ୟ ହୋଇଥିଲେ ମୋର କିଛି କହିବାର ନ ଥିଲା । କିନ୍ତୁ ତୁମେ ଯେ ଜଣେ କବି । ସୃଜନ ଯେ ତୁମର ଧର୍ମ । ଭଗବାନ ତୁମକୁ ଯେଉଁ ଶକ୍ତି ଦେଇଛନ୍ତି, ତାହାର ଯଥାର୍ଥ ଉପଯୋଗ କରି ସାହିତ୍ୟକୁ

ସମୃଦ୍ଧ କରିବା, ବିଶ୍ୱକୁ ମଧୁମୟ କରିବା, ଆଦର୍ଶର ମହତ୍ତ୍ୱ ପ୍ରତିଷ୍ଠା କରିବା ତୁମର ଚରମ କର୍ତ୍ତବ୍ୟ ।

ଗଙ୍ଗାଧର—କର୍ତ୍ତବ୍ୟ ! ଧର୍ମ । ମୃତ ଶିଶୁ ପ୍ରସବ କରିବାରେ କି ଧର୍ମ ଥାଏ ? କି ଆନନ୍ଦ ଥାଏ ? କି ସାଫଲ୍ୟ ଥାଏ ? ଥାଏ କେବଳ ପ୍ରସୂତି ବେଦନା !

ପ୍ରକୃତି—ମୃତ ଶିଶୁ ? ତୁମେ କଣ ଭାବୁଛ, 'ଇନ୍ଦୁମତୀ', 'କୀଚକବଧ' ଏ ସବୁ ମୃତ ଶିଶୁ ?

ଗଙ୍ଗାଧର—ହଁ କୀଟଭୋଜ୍ୟ ପୁସ୍ତକ ଓ ମୃତଶିଶୁ ମଧ୍ୟରେ ପାର୍ଥକ୍ୟ କ'ଣ ଅଛି ? ନା, ନା, ନିଷ୍ଫଳ କବିଧର୍ମଠାରୁ ଆଶାପ୍ରଦ ମାନବଧର୍ମ ଶତଗୁଣରେ ଶ୍ରେୟସ୍କର ମୋ ପକ୍ଷରେ । ମୂଲ୍ୟ-ହୀନ କବିତା ପୁସ୍ତକମାନ ରଚନା କରିବାଠାରୁ ଜୀବନ୍ତ ମନୁଷ୍ୟ ଗଢ଼ିବା ଅଧିକ କାମ୍ୟ ବୋଲି ମୁଁ ମନେ କରେଁ । କଳ୍ପନାର ବିଳାସରେ ଓ ଉଦାର ପ୍ରବୃତ୍ତିର ପ୍ରେରଣାରେ ପଡ଼ି ମୋ ନିଜର ପୁଅକୁ ମନୁଷ୍ୟ କରି ପାରିଲି ନାହିଁ । ଏବେ ଅନ୍ୟର ପୁଅ ଯୋଗେଶ୍ୱରକୁ ଏକ ସଫଳ ଶିକ୍ଷିତ ମନୁଷ୍ୟ ରୂପେ ଗଢ଼ିବାକୁ ଚେଷ୍ଟା କରୁଛି ମୁଁ । ସ୍ୱପ୍ନ ଓ ସତ୍ୟ ମଧ୍ୟରେ ଯେତିକି ପାର୍ଥକ୍ୟ, ପାଞ୍ଚିଟି 'କୀଚକ ବଧ' ଓ ଗୋଟିଏ ଯୋଗେଶ୍ୱରର ଭବିଷ୍ୟତ୍ ମଧ୍ୟରେ ତହିଁରୁ ଖୁବ୍ ଅଧିକ ପାର୍ଥକ୍ୟ । ସେଥିପାଇଁ ଯଦି ମୋର ଲେଖନୀରୁ କିଛି ସ୍ୱପ୍ନ—ତୁମ ମତରେ ଭଲ ସ୍ୱପ୍ନ—ବାହାରିଥାଏ, ତେବେ ସେତିକରେ ଓଡ଼ିଆ ସାହିତ୍ୟ ପ୍ରତି ମୋର ଅବଦାନ ଶେଷ ହେଉ । ବର୍ତ୍ତମାନ ଯୋଗେଶ୍ୱରକୁ ମନୁଷ୍ୟ

କର ଗଢ଼ିବାରେ ମୋର ସମସ୍ତ ଶକ୍ତି ବିନିଯୋଗ କରିବାକୁ ଚାହେଁ ମୁଁ ।

ପ୍ରକୃତ—କିନ୍ତୁ ଯୋଗେଶ୍ୱର କେତେ ଦିନ ବଞ୍ଚି ରହିବ ? ସେ ଯଦି ବଡ଼ଲୋକ ହୁଏ, ବଡ଼ ଚାକିରି କରେ, ତା'ପରେ କ'ଣ ? ଦେଶ ଓ କାଳର ବନ୍ଧନ ଉର୍ଦ୍ଧ୍ୱରେ ମାନବର ଯେଉଁ ଆଉ ଏକ ଜୀବନ ଅଛି, ତାହା ସବୁଦିନ, ସବୁ ଦେଶରେ ସ୍ୱର୍ଗ ଆଡ଼କୁ ଅନାଇ ରହିଛି, ଅମରଧାମକୁ ହାତ ବଢ଼ାଉଛି, ସେହି ଜୀବନ କଥା ତୁମେ କଣ ଭୁଲି ଯାଉଛ କି ?

ଗଙ୍ଗାଧର—କଣ ପାଇବି ମୁଁ ସେ ଜୀବନରୁ ? ମୁଁ ଅମର ହେବାକୁ କେବେ ଚାହିଁ ନାହିଁ, ଚାହେଁ ନାହିଁ । ବର୍ତ୍ତମାନ ହିଁ, ଏହି କୁଟୀର ହିଁ ମୋ ପକ୍ଷରେ ଯଥେଷ୍ଟ ।

ପ୍ରକୃତ—ସତେ ତୁମେ ଗଙ୍ଗାଧର ମେହେର ଏକଥା କହୁଛ ? ତୁମର ବର୍ତ୍ତମାନ ଜୀବନ ତୁମ ପକ୍ଷରେ ଯଥେଷ୍ଟ ? ଆଚ୍ଛା, ମୁଁ ପଚାରେଁ, ତୁମେ ଜମିଦାର ସପକ୍ଷରେ ମିଛ ସାକ୍ଷୀ ଦେଲ ନାହିଁ କାହିଁକି ? କାଲିଠାରୁ କଚେରିରେ ଲାଞ୍ଚ ନେଇ ନିଜର ଦରିଦ୍ରତା ଦୁଃଖ ଦୂର କରିବ ନାହିଁ କାହିଁକି ?

ଗଙ୍ଗାଧର—ମୋର କଣ ଅଭାବ ଅଛି ଯେ ମୁଁ ଅନ୍ୟାୟ ଉପାୟରେ ଟଙ୍କା ଆଣିବି ? ମୁଁ ପାପକୁ ଘୃଣା କରେଁ !

ପ୍ରକୃତ—ପାପକୁ ଘୃଣା କର କାହିଁକି ? ଖେତରେ କାଦୁଅ ଭିତରକୁ ପଶିବାକୁ ଘୃଣା କର ନାହିଁ କାହିଁକି ! ତୁମେ ଜାଣ କାଦୁଅ ଭିତରେ ପଶିଲା ପରେ ଗାଧୋଇ ପଡ଼ିଲେ ଦେହ ସଫା ହୋଇଯାଏ । ସେହିପରି ଯାହା ପାପ କଲେ ମଧ୍ୟ

ପଢ଼ିର ଧର୍ମ ଶାସ୍ତ୍ର ପାଠ କଲେ ସେ ପାପ ଧୋଇ ହୋଇଯାଏ ।

ଶୁଣ ଗଙ୍ଗାଧର, ଏ ଜାତି ତୁମକୁ ଚିହ୍ନି ପାରି ନାହିଁ । ଆଶା କରାଯାଉଛି ସୁଦୂର ଭବିଷ୍ୟତ୍‌ରେ ଦିନେ ଓଡ଼ିଆ ଜାତି ତୁମକୁ ଚିହ୍ନିବ । ନ ଚିହ୍ନିଲେ ମଧ୍ୟ ସେଥିରେ ତୁମର କିଛି କ୍ଷତି ନାହିଁ । କିନ୍ତୁ ଦୁଃଖର ବିଷୟ, ତୁମେ ମୁଦ୍ଧା ନିଜକୁ ଚିହ୍ନି ପାରି ନାହିଁ । ଏହାଠାରୁ ବଳି ଦେଶ ପକ୍ଷରେ ଅଧିକ ଦୁର୍ଭାଗ୍ୟର ବିଷୟ କିଛି ନାହିଁ ।

ଗଙ୍ଗାଧର – ମୁଁ ନିଜକୁ ଚିହ୍ନି ନାହିଁ ? ଖୁବ୍ ଚିହ୍ନିଛି ।

ପ୍ରବୁଦ୍ଧ – ନିଜକୁ ଚିହ୍ନିଥିଲେ ଲାଞ୍ଚ ମିଛକୁ ପୌରାଣିକ ପାପ-ପୁଣ୍ୟର ମାପରେ ବିଗୃହ କରି ନ ଥାନ୍ତ । ଶୁଣ, ତୁମେ ହେଉଛ ସତ୍ୟର ପୂଜାରୀ । ସୌନ୍ଦର୍ଯ୍ୟର ଉପାସକ । ସେଇଥି-ପାଇଁ ମିଛ ସାକ୍ଷ୍ୟ ଦେବା, ଲାଞ୍ଚ ଖାଇବା ତୁମ ପକ୍ଷରେ ସମ୍ଭବ ନୁହେ । ଆଜିର ବାର୍ଦ୍ଧକ୍ୟଗ୍ରସ୍ତ ଶାରୀରିକ ରୂପ-ଲାବଣ୍ୟହୀନ, ଦୁଃଖପଙ୍କ ମଗ୍ନ, ମୋହରି ବାବୁ ତାର ବାଲ୍ୟକାଳରୁ ଗଙ୍ଗାଧର ମେହେର ବୋଲି ଜଣେ ନୈତିକ ମହାପୁରୁଷକୁ ଗଢ଼ିବାକୁ ଚେଷ୍ଟା କରୁଛି । ମୋହରି ବାବୁ ଶତ ଚେଷ୍ଟା କଲେ ବି ସାଢ଼େ ତିନି ହାତରୁ ଅଧିକ ଉଚ୍ଚ ହୋଇ ପାରିବ ନାହିଁ । କିନ୍ତୁ ଗଙ୍ଗାଧର ମେହେର ବିରାଟ ମାନବ ହୋଇ ପାରିବେ । ସେହି ବିରାଟତା ସାଧନ କରିବା ତୁମର ଧର୍ମ । ତୁମର କର୍ତ୍ତବ୍ୟ ବୈରାଗ୍ୟ ନୁହେ ।

ଗଙ୍ଗାଧର – କିନ୍ତୁ ମୁଁ ଗଙ୍ଗାଧରଙ୍କୁ ସାଢ଼େ ତିନି ହାତରୁ ଅଧିକ ଉଚ୍ଚ ଦେଖିବାକୁ ଚାହେଁ ନାହିଁ । ସାଧାରଣ ମନୁଷ୍ୟ ପରି ବଞ୍ଚି ରହିବାକୁ ଓ ମରିବାକୁ ଚାହେଁ ।

ପ୍ରକୃତି—ତୁମର ସମସ୍ତ ଅନିଚ୍ଛା ସତ୍ତ୍ୱେ ଧର ଯଦି ଦିନେ ସମ୍ବଲପୁରର ସର୍ବୋଚ୍ଚ ଶିକ୍ଷାନୁଷ୍ଠାନ ତୁମ ନାମରେ ନାମିତ ହୁଏ, ତୁମ ନାଆଁରେ ହଜାର ହଜାର ଟଙ୍କା ସଂଗ୍ରହ କରି ଯଦି ତୁମର ନାମକୁ ଅମର କରିବା ପାଇଁ ତୁମର ପ୍ରତିମୂର୍ତ୍ତି ଗଢ଼ାଯାଏ, ତୁମ ନାମରେ ପାଠାଗାର ସ୍ଥାପନ ହୁଏ, ତୁମର ସ୍ମୃତିକୁ ଅମର କରିବା ପାଇଁ........

ଗଙ୍ଗାଧର—(କଥାରେ ବାଧା ଦେଇ) ଥାଉ, ଥାଉ । ମୁଁ ଚାହେଁ ନାହିଁ ଏ ସମ୍ମାନ । ମୁଁ ଏଥିପାଇଁ ଆଦୌ ଯୋଗ୍ୟ ନୁହେଁ । ମୋର ଏଇ ସୁବର୍ଣ୍ଣ ଜୟନ୍ତୀର ଉପହାର ପୁଅର ପାଳିଙ୍କର, ଗାଆଁର କୃଷିର ବପର୍ଯ୍ୟସ୍ତତା, ସଙ୍ଗେ ତୁମର ଆଶୀର୍ବାଦ, ସାଧାରଣ ମନୁଷ୍ୟର ଯାହା କାମ୍ୟ ସେତିକି ହିଁ ମୋ ପକ୍ଷରେ ଯଥେଷ୍ଟ ।

ପ୍ରକୃତି—ତୁମ ପକ୍ଷରେ ଯଥେଷ୍ଟ ହୋଇପାରେ । କିନ୍ତୁ ମୋ ପକ୍ଷରେ, ତୁମର ମାତୃଭୂମି ଓ ମାତୃଭାଷା ପକ୍ଷରେ, ଉତ୍କଳ ଲକ୍ଷ୍ମୀ ପକ୍ଷରେ, ପ୍ରକୃତି ପକ୍ଷରେ, ଯଥେଷ୍ଟ ନୁହେଁ । ତୁମେ ମୋତେ ଭକ୍ତି କର । ମୋତେ ପୂଜା କରିବା ପାଇଁ ଚନ୍ଦନ, ଫୁଲ, ନୈବେଦ୍ୟ ନେଇଥିଲ ସବୁ ? କହ ପକ୍ଷରେ ପ୍ରକୃତ ପୂଜା ପାଇଁ ଭକ୍ତିଠାରୁ ଉତ୍ତମ ନୈବେଦ୍ୟ ଆଉ କଣ ହୋଇପାରେ ? ଉଠ, ତୁମର

କଳ୍ପନାକୁ ଜାଗ୍ରତ କର । ସୃଜନ ଶକ୍ତିକୁ ପ୍ରବଳ କର । ସାଧାରଣ ମାନବ ମନୁଷ୍ୟ ଗଢ଼େ, ପୃଥ୍ୱୀ ଗଢ଼େ । ତୁମେ କବି । ତୁମେ ଦେବତା ଗଢ଼ି ପାରିବ । ଦେବତା ଗଢ଼ି ଜନନୀ ସାହିତ୍ୟକୁ ସମୃଦ୍ଧ କର । ଏପରି ସୁନ୍ଦର ଦେବତା ଗଢ଼, ଯାହାଙ୍କୁ ମୂଷାପଙ୍କେ କୌଣସି ଜୀବ ନଷ୍ଟ କରି ପାରିବ ନାହିଁ, ସମସ୍ତଙ୍କର ଉପେକ୍ଷାକୁ ଉପେକ୍ଷା କରି ଯେ ଅମର ହୋଇ ତୁମକୁ ଅମର କରି ପାରିବେ । କାଳସ୍ରୋତ ବହି-ଯାଏ । ଫୁଲ ଫୁଟି ଝଡ଼ିଯାଏ । ସଙ୍ଗୀତର ମୂର୍ଚ୍ଛନା ଶେଷ ହୁଏ । କିନ୍ତୁ ତୁମେ ଯାହା ଅମରତ୍ୱ ପାଇଁ ସୃଷ୍ଟି କରିବ କାଳ ତାହାକୁ ଝଡ଼ାଇ ପାରିବ ନାହିଁ । ତାହା ଗଙ୍ଗାପରି ଯୁଗେ ଯୁଗେ ବହି ଚଳିଥିବ ତୁମରି ସଂଗୀତ ଗାଇ ତୁମରି ନାମ ଗାନ କରି । କସ୍ତୁରୀ ମୃଗର କସ୍ତୁରୀ ପରି ତୁମର ମର ଜୀବନ ପରେ ଯୁଗରେ ଯୁଗରେ ତୁମର କାବ୍ୟ ସୌରଭ ବିକଶିତ ହେବ ।

ଗଙ୍ଗାଧର — ତେବେ ତୁମେ ମୋତେ ଆଶୀର୍ବାଦ କର । ପ୍ରେରଣା ଦିଅ । ଶକ୍ତି ଦିଅ । ( ଜାନୁପାତରେ ପ୍ରଣାମ କରି ) ।

ପ୍ରକୃତି — ଆଜି ତୁମର ଜନ୍ମ ଦିନରେ ତୁମର ମାଆ ଥିଲେ ଆଶୀର୍ବାଦ କରିଥାନ୍ତେ ଶତଜୀବୀ ହୁଅ ବୋଲି । ମୋର ଆଶୀର୍ବାଦ ତୁମେ ଚିରଜୀବୀ ହୁଅ ।

— ଯବନିକା —



# ଦେବତାଙ୍କର ଛାୟା

ଘଟନା କାଳ—୧୯୪୭ ମାର୍ଚ୍ଚ ମାସ । ସ୍ଥାନ—ଗୋଟିଏ ସୁସଜ୍ଜିତ ଡ୍ରଇଂରୁମ । ସମ୍ମୁଖ କାନ୍ଥରେ ମହାତ୍ମା ଗାନ୍ଧି ଓ ପଣ୍ଡିତ ନେହେରୁଙ୍କ ସହାସ୍ୟ ବାକ୍ୟାଳାପ କରୁଥିବା ଅବସ୍ଥାରେ ଥିବା ଗୋଟିଏ ରଙ୍ଗିନ୍ ଛବି ଓ ସାମରିକ ପୋଷାକ ପିନ୍ଧିଥିବା ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କର ଆଉ ଏକ ରଙ୍ଗିନ୍ ଛବି । ଉଭୟ ଛବି ମଝିରେ ଗୋଟିଏ କାନ୍ଥଘଡ଼ି । ଘଡ଼ିରେ ନଅଟା ବାଜି ଦଶ ମିନିଟ ହୋଇଛି ।

କୋଠରୀ ମଝିରେ ଗୋଟିଏ ବଡ଼ ଟେବୁଲ । ଟେବୁଲ ଉପରେ ସମ୍ବଲପୁରୀ ଢଙ୍କାଇନ ଥିବା ଗୋଟିଏ ବଡ଼ ଟେବୁଲ୍ କ୍ଲଥ ଟେବୁଲ୍ ତଳ ପର୍ଯ୍ୟନ୍ତ ଲମ୍ବିଛି । ଟେବୁଲ ଉପରେ ଗୋଟିଏ ଟେଲିଫୋନ୍ ଓ ଫୁଲ୍‌ଦାନୀରେ କେତେକ ଫୁଲ । ଟେବୁଲର ଦୁଇ ପାଖରେ ଦୁଇଟି ସୋଫା । ଟେବୁଲର ସେ ପାଖରେ ଗୃଣ ପାଞ୍ଚଟା ଚେଆର ଓ ସୋଫା ।

ମଞ୍ଚର ବାମ ପଟରୁ ପ୍ରବେଶ କଲେ ତିନି ଜଣ ବ୍ୟକ୍ତି । ପ୍ରଥମ ଜଣକ ପ୍ରୌଢ଼ । ମୁଣ୍ଡର ବାଳ ଅଧା ପାଚି ଗଲଣି । ମୁହଁ ଲମ୍ବା । ଦାନ୍ତ କେତୋଟି ପଡ଼ିଗଲଣି । ଆଖିରେ ଚଷମା । ଦେହରେ ଧଳା ପଞ୍ଜାବୀ । ବାଁ ହାତରେ ଫୁଲମାଳ । ତାଙ୍କ ସାଙ୍ଗରେ ଜଣେ ଯୁବକ । ଯୁବକଙ୍କର ଚେହେରା ବେଶ୍ ମୋଟା ଓ ଗୋଲ୍‌ଗାଲ୍ । ପରିଧାନ ପ୍ରୌଢ଼ ଭଦ୍ରବ୍ୟକ୍ତିଙ୍କ ପରି । ତୃତୀୟ ଜଣକ ହେଉଛନ୍ତି—ଦାଢ଼ିଆ ପଣ୍ଡିତ; ମୁହଁରେ ବସନ୍ତର ଚିହ୍ନ, ଦେହଟା କଳା-କପାଳରେ ତାଙ୍କର ଚନ୍ଦନର ଚିତା ।

ପ୍ରୌଢ଼ ଭଦ୍ରବ୍ୟକ୍ତି:—ବସନ୍ତୁ ଅଶୋକ ବାବୁ, ବସନ୍ତୁ ପଣ୍ଡିତେ ।
(ସମସ୍ତେ ଉପବେଶନ କଲା ପରେ)

ପ୍ରୌଢ଼—ବୁଝିଲେ ଅଶୋକ ବାବୁ, ଭୋଟ ରହିଲା ମାତ୍ର ଆଉ ଦୁଇ ଦିନ । କିନ୍ତୁ ନିର୍ବାଚନମଣ୍ଡଳୀର ଅଧେ ଗାଆଁକୁ ସୁଦ୍ଧା ଏପର୍ଯ୍ୟନ୍ତ ଯାଇପାରି ନାହିଁ ମୁଁ । ଏ ଦୁଇ ଦିନରେ ଆଉ କେତେ କାମ ହେବ ?

ଅଶୋକ—ଆଜ୍ଞା, ସେଥିପାଇଁ ଚିନ୍ତା କରନ୍ତୁ ନାହିଁ । ଏ ଜିଲ୍ଲାରେ ଆପଣଙ୍କୁ ନ ଚିହ୍ନେ କିଏ ?

ପଣ୍ଡିତେ—ଜିଲ୍ଲା କାହିଁକି, ସାରା ଓଡ଼ିଶାରେ ନରୋତ୍ତମ ଦାସଙ୍କୁ ନ ଚିହ୍ନି କିଏ ଅଛି ? ଏପରି ଗୁଣୀ, ମାନୀ, ନିଃସ୍ୱାର୍ଥ ଦେଶସେବକ କେତେ ଜଣ ଅଛନ୍ତି କହନ୍ତୁ ଭଲା ! ମୁଁ ସେ ଦିନ ଆପଣଙ୍କର ହେଡ଼କ୍ୱାର୍ଟର କାର୍ଯ୍ୟରେ ସିଠାପାଲି ଗାଁକୁ ଯାଇଥିଲି । ସେଠାରେ ଆପଣଙ୍କର କଥା ପଡ଼ିବା ମାତ୍ରେ ସମସ୍ତେ କହିଲେ, "ଆମେ କଣ ନରୋତ୍ତମବାବୁଙ୍କୁ ଭୋଟ

ନ ଦେଇ ଗୋପାଳ ବାବୁଙ୍କୁ ଦେବୁ ? ହେଲେ ତାଙ୍କୁ ଆମେ ଅନେକ ଦିନ ହେଲା ଦେଖି ନାହୁଁ । ତାଙ୍କୁ ଟିକିଏ ଏ ଗାଆଁରେ ପାଦରଜ ପକାଇବାକୁ କହୁନ୍ତୁ ନାହିଁ ? ଏଇ କଥା କହୁଥିଲେ ଲୋକେ । ମୁଁ ସେମାନଙ୍କୁ କହିଦେଇ ଆସିଛି, ଦାସେ ଆପଣେ ଦିନେ ଦୁଇ ଦିନ ଭିତରେ ନିଶ୍ଚୟ ତୁମ ଗାଆଁକୁ ଆସିବେ ।"

ନରୋତ୍ତମ—ଆଚ୍ଛା ଅଶୋକବାବୁ, ଆଜି ସଭା ବିଷୟରେ ଆପଣଙ୍କର କଣ ଧାରଣା ହେଲା ?

ଅଶୋକ—ମୋର ତ ଧାରଣା ସହରରେ ଶତକଡ଼ା ଅଶୀ ଲୋକ ଆପଣଙ୍କ ସପକ୍ଷରେ ଭୋଟ ଦେବେ—ଏ କଥା ମୁଁ ବାଜି ରଖି ପାରେ । ଭୋଟ ଗଣତି ପରେ ଦେଖିନେବେ । ତେବେ ଗୋପାଳବାବୁ ଯେମିତି ଟଙ୍କା ପଇସା ବାଣ୍ଟିବାକୁ ଲାଗିଛନ୍ତି, ଗରିବ ଲୋକେ ସେଇ ପ୍ରଲୋଭନରେ ପଡ଼ି ଶହେରୁ କୋଡ଼ିଏ ଲୋକ ତାଙ୍କ ଆଡ଼େ ଯିବେ ବୋଲି ମୋତେ ମନେ ହେଉଛି ।

ନରୋତ୍ତମ—ସେଇଥିପାଇଁ ମୁଁ ତ ଆଜି ସଭାରେ ଦେଶରେ ବ୍ୟାପି ଯାଉଥିବା ଦୁର୍ନୀତି ବିଷୟରେ ଜୋର ଦେଇ କହିଥିଲି । ଆପଣ ଦେଖନ୍ତୁ, ଆଜି କପରି ସମାଜର ସବୁ ସ୍ତରରେ ଦୁର୍ନୀତି ବଢ଼ି ଚାଲିଛି । କଳାବଜାରୀମାନେ ସମାଜର ମାଲିକ ହେଉଛନ୍ତି, ଜିନିଷପତ୍ର ଅଧିକରୁ ଅଧିକ ଦୁର୍ମୂଲ୍ୟ ହେଉଛି । ଖାଇବା ଜିନିଷରେ, ଔଷଧରେ ଅସ୍ୱାସ୍ଥ୍ୟକର ପଦାର୍ଥ ମିଶାଇ ବିକି କରାଯାଉଛି । ଦେଖନ୍ତୁ, ପିଲା-

ମାନଙ୍କର ପତାପଢ଼ରେ କେତେ ବଶୃଙ୍ଖଳା; ବସ୍ତୁସ୍ଥମାନଙ୍କ ପ୍ରତି ଟିକିଏ ହେଲେ ସମ୍ମାନ ନାହିଁ । ଲାଞ୍ଚ, ମିଛ, ପ୍ରିୟାପ୍ରୀତ ଚତାମଣ, ଏସବୁ ଆଜ ଘୃଣାଯୋଗ୍ୟ ଅପରାଧ ହୋଇ ନାହିଁ । ଏ ସବୁ କାହିଁକି ହେଉଛି ? ଗୋପାଳ ବାବୁଙ୍କ ଭଳିଆ ଲୋକ—ଯେଉଁମାନେ ଜନନେତା ହେବାକୁ ବାହାରିଛନ୍ତି, ସେମାନେ ଭୋଟବେଳେ ଟଙ୍କା ବାଣ୍ଟି, ଭୋଟ ନେଇ ଏ ଦୁର୍ନୀତିକୁ ପ୍ରଶ୍ରୟ ଦେଉଛନ୍ତି ବୋଲି ସିନା ଏପରି ହେଉଛି ।

ପଣ୍ଡିତେ—ଠିକ୍ କଥାଟିଏ କହିଛନ୍ତି, ପାସେ ଆପଣେ । ଆଜ ସଭାରେ ଆପଣ ଯେତେବେଳେ ଏଇ କଥା କହି ଗୋପାଳ ବାବୁଙ୍କୁ ଗାଳି ଦେଉଥିଲେ, ସେତେବେଳେ ମୁଁ ପଛରେ ବସି ସବୁ ଶୁଣୁଥାଏ—କେତେ ଲୋକ ଗୋପାଳ ବାବୁଙ୍କୁ ଛି ଛି କରୁଥାନ୍ତି । ଆପଣଙ୍କୁ ସମସ୍ତେ ପ୍ରଶଂସା କରୁଥାନ୍ତି । ବାସ୍ତବିକ ଯାହାର ଚରିତ୍ର ନାହିଁ, ଯେ ଲୋକଙ୍କୁ ଟଙ୍କା ଦେଇ ଭୋଟ ପାଇବାର ଆଶା କରିଛି, ସେ ଭୋଟ ପାଇଲା ପରେ କଣ କରିବ ? ନିଜ ପାପରେ ନିଜେ ନାଶ ଯିବ ।

ଅଧ୍ୟାପକ—ଠିକ୍ କହୁଛନ୍ତି ପଣ୍ଡିତେ; ଆଜ ନରୋତ୍ତମ ବାବୁଙ୍କ ବକ୍ତୃତା ପରେ ଲୋକଙ୍କ ମନରେ ତାଙ୍କ ପ୍ରତି ବିଶେଷ ଭକ୍ତି ହୋଇଛି ବୋଲି ମୋର ବିଶ୍ୱାସ । କିନ୍ତୁ ତା ହେଲେ କଣ ହେବ ? ଗୋପାଳ ବାବୁଙ୍କ କର୍ମୀମାନେ ଗାଁ ଗାଁରେ ମାଡ଼ିଗଲେଣି । ଏଇ ତ ଗଲା ଶନିବାର ଦିନ ରାତି ପ୍ରାୟ ଏଗାରଟା ବେଳେ ମୁଁ ମହୁଲପାଳ ଗାଆଁରେ ପହୁଞ୍ଚିଲି ।

ସେଠାରେ କେନ୍ଦ୍ରୁ ପଠା ଫାଣ୍ଡିରେ ଗାଆଁ ଯାକ ଲୋକଙ୍କୁ ଜମା କରି ପେଟ୍ରୋମେକ୍ସ ଜାଳି ସେଥିରେ ଲିଷ୍ଟ ପଢ଼ି ଗୋପାଳ ବାବୁଙ୍କ ଲୋକ ଜଣ ପିଛା ଦୁଇ ଦୁଇ ଟଙ୍କା ବାଣ୍ଟୁଥାଏ । ମୁଁ ଭାବୁଛି, ଆମ ତରଫରୁ ଏହାର କିଛି ପ୍ରତିକାର ନ କଲେ ଶେଷ ମୁହୂର୍ତ୍ତରେ ପରିସ୍ଥିତି ଖରାପ ହୋଇପାରେ । ଲୋକେ ତାଙ୍କ ଟଙ୍କାରେ ଭୁଲିଯିବେ ।

ନରୋତ୍ତମ—ତେବେ ଅଶୋକ ବାବୁ, ଆପଣ କଣ କହିବାକୁ ଚାହାନ୍ତି ଆମର ବି ସେଇପରି ଟଙ୍କା ବାଣ୍ଟିବାର ଥିଲା ବା ଏବେ ସେଇପରି କରିବାକୁ ପଡ଼ିବ । ମୋ ଦ୍ୱାରା ଏ କଥା ହୋଇ ପାରିବ ନାହିଁ ।

ଅଶୋକ—ମୁଁ କଣ ସେ କଥା କହୁଛି ? ମୁଁ କହୁଥିଲି—ଏହାର ପ୍ରତିକାର ପାଇଁ ଆମକୁ ମଧ୍ୟ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ, ଅବଶ୍ୟ ଲାଞ୍ଚ ହିସାବରେ ନୁହେଁ । ଆହୁରି ଅନେକ କର୍ମୀ ବନ୍ଦୋବସ୍ତ କରି ସେମାନଙ୍କୁ ଉପଯୁକ୍ତ ପାରିଶ୍ରମିକ ଦେବାକୁ ହେବ । ଟଙ୍କା ଖର୍ଚ୍ଚ କରି ଅନ୍ୟ କର୍ମୀ ବନ୍ଦୋବସ୍ତ କରିବାକୁ ସେମାନଙ୍କୁ କୁହାଯିବ । ଏଥିରେ ତ ଦୁର୍ନୀତିର ପ୍ରଶ୍ନ ଉଠୁନାହିଁ । ଲକ୍ଷେ ଲୋକଙ୍କ ପାଖକୁ ପହଞ୍ଚିବାକୁ ହେଲେ ଶହ ଶହ କର୍ମୀ ଦରକାର ।

ନରୋତ୍ତମ—କିନ୍ତୁ ଏଥିପାଇଁ ଯେ ବହୁତ କର୍ମୀ ଦରକାର । କଣ କରାଯିବ ? ମୋ ପାଖରେ ତ ଟଙ୍କା ସବୁ ସରି ଆସିଲାଣି ।

ଅଶୋକ—ସବୁ ଆସିଲାଣି ! ଆପଣଙ୍କର ତ ଟଙ୍କା ଖର୍ଚ୍ଚ ହେଉ ନାହିଁ କିନ୍ତୁ । ଖାଲି ମଟର ଭଡ଼ା, ପେଟ୍ରୋଲ୍ ଆଉ ମାଇକ୍‌ରେ କେତେ ଟା ଖର୍ଚ୍ଚ ହେଉଥିବ ?

ନରୋତ୍ତମ—କଣ କହୁଛନ୍ତି ଅଶୋକ ବାବୁ ? ଏଇଥିରେ ତ ବାର ହଜାର ଟଙ୍କା ଉଡ଼ି ଗଲାଣି । ଆଉ କେତେ ଦିନ ପାଇଁ ଆଉ ଦୁଇ ତିନି ହଜାର ଟଙ୍କା କୌଣସିମତେ ଯୋଗାଡ଼ କରିପାରେ ପାରେ । ତା ପରେ ତ ମୁଁ କାଙ୍ଗାଳ । ସେଇଥିପାଇଁ ତ ମୁଁ କହୁଥିଲି-ଗୋପାଳ ବାବୁଙ୍କ ଖର୍ଚ୍ଚରେ ପାରି ହେବ ନାହିଁ । ସେଇଥିପାଇଁ ତ ମୁଁ ତାଙ୍କର ଦୁର୍ନୀତି ଉପରେ ଅଧିକ ଜୋର ଦେଉଛି ।

ପଣ୍ଡିତେ—ଆଜ୍ଞା, ଖାଲି କଥାରେ କଣ ଲୋକଙ୍କର ପେଟ ପୂରିବ ? ଆମ ତରଫରୁ ଯେଉଁ କର୍ମୀମାନେ ଗାଆଁମାନଙ୍କୁ ଯିବେ, ସେମାନଙ୍କୁ ପାରିଶ୍ରମିକ ତ କିଛି ଦିଆଯିବ ।

ନରୋତ୍ତମ—ନା, ନା, ମୁଁ ଗୃହେଁ ସ୍ୱେଚ୍ଛାସେବକ । ମୁଁ ତ ମୋର ନାମ ଦାମ ଓକିଲାତି ଛାଡ଼ି ସ୍ୱେଚ୍ଛାରେ ଲୋକଙ୍କର ସେବା କରିବା ପାଇଁ ବାହାରିଛି—ହାତରୁ ଖାଇ ଘୋଡ଼ା ଆଗରେ ଦଉଡ଼ିବା ପାଇଁ । ମୁଁ ସେଥିପାଇଁ ଗୃହେଁ ସ୍ୱେଚ୍ଛାସେବକ ଯେଉଁମାନେ ତ୍ୟାଗର ମର୍ଯ୍ୟାଦା ବୁଝିବେ ।

ଅଶୋକ—ଠିକ୍ କଥା । କିନ୍ତୁ ଆପଣଙ୍କର ଓ କର୍ମୀମାନଙ୍କ ମଧ୍ୟରେ ପ୍ରଭେଦଟା କେଉଁଠି ବୁଝୁ ନାହାନ୍ତି ? ଆପଣ ଯେଉଁମାନଙ୍କୁ କର୍ମୀ କରି ପଠାଇବେ, ସେମାନଙ୍କର ଅନ୍ତତଃ ଦୁଇବେଳର ଖାଇବା ଖର୍ଚ୍ଚ ତ ଦେବେ । ଆଉ ସେମାନେ ସ୍ୱେଚ୍ଛାସେବକ

ହେଲେ ଦୁଇଦିନ ପରେ ସେମାନଙ୍କର କାମର ମର୍ଯ୍ୟାଦା ରହୁ ନାହିଁ । ଆପଣ ଭୋଟ ପାଇ ମେମ୍ବର ହେଲେ ଗୃହଅଡ଼େ ଆପଣଙ୍କର ନାଆଁ ଉଡ଼ିବ ।

ନରୋତ୍ତମ—(ଚିନ୍ତିତ ସ୍ୱରରେ), ହଁ ଠିକ୍ କଥା । ଆଚ୍ଛା, କାଲି କର୍ମୀମାନଙ୍କୁ ଡକାଅ । କିନ୍ତୁ ଏକଥା ସ୍ପଷ୍ଟ କରି ସେମାନଙ୍କୁ ଜଣାଇଦେବା ଯେ, ମୁଁ ଏପରି କୌଣସି ଖର୍ଚ୍ଚ କରିବାକୁ ପ୍ରସ୍ତୁତ ନୁହେଁ, ଯାହାକି ଦୁର୍ନୀତି ତାଲିକାରେ ପଡ଼ିପାରେ ବା ଯାହା ମୁଁ ଭୋଟ ଖର୍ଚ୍ଚ ରୂପେ ଦେଖାଇବାକୁ ପ୍ରସ୍ତୁତ ନୁହେଁ ।

ଅଶୋକ—ହଉ, ଏ ଯେ ଦଶଟା ବାଜିବା ସମସ୍ତ ହେବ । ଆପଣ ଚଞ୍ଚଳ ଖିଆପିଆ ସାରି ପ୍ରସ୍ତୁତ ହୁଅନ୍ତୁ । ସାଡ଼ଯାକ ବୁଲି କେତେ ଗାଁରେ କର୍ମୀ ଓ ଲୋକମାନଙ୍କୁ ଧରି ପରାମର୍ଶ କରିବାର ଅଛି । ପୁଣି ଏବେ ଘଣ୍ଟାଏ ପରେ—ଏଗାରଟାରେ ବାହାରିବା ।

( ଅଶୋକ ବାବୁ ଓ ପଣ୍ଡିତଙ୍କର ପ୍ରସ୍ଥାନ )

ନରୋତ୍ତମ—(ଇତସ୍ତତଃ ପଦଚାରଣ କରୁଁ କରୁଁ ଅସ୍ଫୁଟ ସ୍ୱରରେ) କଣ କରିବା ? କଣ କରିବା ?

(ତାହାଙ୍କ ଆଗ୍ରେ ପ୍ରବେଶ କଲେ ଜଣେ ଭଦ୍ରମହିଳା—ମଧ୍ୟବୟସୀ ଓ ମୋଟା, ଦେହରେ ନୀଳ ବର୍ଣ୍ଣର ସମ୍ବଲପୁରୀ ଶାଢ଼ୀ)

ଭଦ୍ରମହିଳା—କଣ କରିବା ? ହରିହର ପଞ୍ଚାକ୍ଷର ମନ୍ତ୍ର ଜପ କରିବା । ଏଇଥିରେ ହିଁ ମୁକ୍ତି ।

ନରୋତ୍ତମ—(ସପ୍ରତିଭ ହୋଇ) ଓଃ, ନିର୍ମଳା ! ବସ ବସ । ମୋ କଥା ଟିକିଏ ଶୁଣ ।

ନିର୍ମଳା—ଆଜି କଣ କିଛି ଖାଇବ ନାହିଁ ? ସେଆଡ଼େ ଭାତ ଡାଲି ସବୁ ଥଣ୍ଡା ହୋଇଗଲାଣି । ଗଣ୍ଡିଏ ଖାଇନିଅ; ତା ପରେ ତୁମର ମନ୍ତ୍ର ଜପ କରୁଥିବ ।

ନରୋତ୍ତମ—ଆଚ୍ଛା ବଡ଼ାବଡ଼ି କର । ଆଚ୍ଛା, ରହ, ଟିକିଏ ଶୁଣ । ଭୋଟ ପାଇଁ ମୋର ଆଜ ତିନି ଚାରି ହଜାର ଟଙ୍କା ଦରକାର । ତୁମର ଏଇ ସୁନା ଚୁଡ଼ିତକ ଟିକିଏ......

ନିର୍ମଳା—(ବାଧା ଦେଇ) କଣ କହିଲ ? ସୁନା ଉପରେ ତୁମର ଆଖି ? ଆଚ୍ଛା, ତା ପରେ ଭୋଟରେ ତୁମେ ଯଦି ହାରି ଯାଅ ?

ନରୋତ୍ତମ—କି ଅମଙ୍ଗଳିଆ କଥା କହୁଛ, ନିର୍ମଳା ! ମୁଁ ହାରିବି ? ଅଲବତ୍ ନେହିଁ ।

ନିର୍ମଳା—(ହସି ପକାଇ) ଅଲବତ୍ ନାହିଁ ତ ଚୁଡ଼ିର ବି ଦରକାର ନାହିଁ । (ନରୋତ୍ତମ ବାବୁଙ୍କ ପାଖକୁ ଆସି ତାଙ୍କ କାନ୍ଧରେ ହାତଦେଇ) ତୁମେ କାହିଁକି ଏତେ ଚିନ୍ତା କରୁଛ, କହିଲ ଭଲ ? ଓକିଲାତି ବ୍ୟବସାୟରେ ଏତେ ଏତେ ରୋଜଗାର କଣ ତୁମକୁ ଗନ୍ଧାଇଲା ? ଆଜ ଆଜି ନିଜର ସ୍ତ୍ରୀର ଅଳଙ୍କାର ବିକି ଭୋଟରେ ଖର୍ଚ୍ଚ କରି ମେମ୍ବର ହେଲେ କି ଧନ ପାଇବ ଶୁଣେ ? ଚୁଲିକି ଯାଉ ତୁମର ମେମ୍ବର ପଣିଆ । ଉଠ ଖାଇବ ଚାଲ ।

ନରୋତ୍ତମ—(ତଥାପି ଚମ୍କିତ ଭାବରେ) ହଉ, ବନ୍ଦୋବସ୍ତ କର । ମୁଁ ଯାଉଛି । (ନିର୍ମଳ ଦେବୀଙ୍କର ପ୍ରସ୍ଥାନ) ଠିକ୍ ପରେ ଶୁଣାଗଲା ବାଁ ପଟରୁ ପାଟି
"ଦାସେ ଆପଣେ ଘରେ ଅଛନ୍ତି ?"

ନରୋତ୍ତମ—କିଏ ? ଆସିବା ହେଉ । ଆସିବା ହେଉ ।
(ଜଣେ ପ୍ରୌଢ଼ ଭଦ୍ରବ୍ୟକ୍ତିଙ୍କର ପ୍ରବେଶ । ବୟସ ପ୍ରାପ୍ତ ପଚାଶ ପାଖାପାଖି । ସବୁବେଳେ ହସ ହସ ମୁହଁ । ଭଦ୍ରବ୍ୟକ୍ତି ନରୋତ୍ତମ ଦାସଙ୍କୁ ଅତି ବିନୀତ ଭାବରେ ପ୍ରଣତି ଜଣାଇଲେ)

ଆଗନ୍ତୁକ—ପ୍ରଣାମ, ସାର୍ । ମୁଁ ଆପଣଙ୍କ କାମରେ ବାଧା ଦେଉ ନାହିଁ ତ ?

ନରୋତ୍ତମ—ନା, ବାଧା କଣ ? ଆସନ୍ତୁ ବସନ୍ତୁ । ଏଇ ଆପଣମାନଙ୍କର ସେବା କରିବା, ଆପଣମାନଙ୍କ କାମରେ ସାହାଯ୍ୟ କରିବା ହେଲା ମୋର କାମ । ସେଥିରେ ପୁଣି ବାଧା କଣ ?

ଆଗନ୍ତୁକ—ସାର୍, ଟିକିଏ ଗୋପନରେ କଥାବାର୍ତ୍ତା ଥିଲା ।

ନରୋତ୍ତମ—ଗୋପନ କଥାବାର୍ତ୍ତା ? ଏଇଟା ତ ଏବେ ଗୋପନ ସ୍ଥାନ । କହନ୍ତୁ, ମୁଁ ଆପଣଙ୍କ ପାଇଁ କଣ କରିପାରେ ? ଆପଣ କେଉଁଠରେ କାମ କରିବା ପାଇଁ ଆସିଛନ୍ତି ?

ଆଗନ୍ତୁକ—(ଇତସ୍ତତଃ ହୋଇ) ହଁ, ସାର୍, (ମୁଣ୍ଡ କୁଣ୍ଡାଇ) ନା ସାର୍, ଗୋଟିଏ କଥା ଥିଲା ।

ନରୋତ୍ତମ—କହନ୍ତୁ ।

ଆଗନ୍ତୁକ—ସାର୍, ମୋତେ ଚିହ୍ନି ପାରୁଛନ୍ତି ?

ନରୋତ୍ତମ—ନା ।

ଆଗନ୍ତୁକ—କେମିତି ଚିହ୍ନିବେ ? ପନ୍ଦର ବର୍ଷ ପରେ ଦେଖା ।

ନରୋତ୍ତମ—ଆପଣଙ୍କର ପରିଚୟ ?

ଆଗନ୍ତୁକ—ସାର୍, ସେହି କଥା ହିଁ କହିବାକୁ ଆସିଛି । ମୋ ନାଁ ଦୟାନିଧି ସାହୁ ।

ନରୋତ୍ତମ—ଦୟାନିଧି ସାହୁ ? ଦେଖିଲା ପରି ମନେ ହେଉଛି । କିନ୍ତୁ ଠିକ୍ କେଉଁଠି, କି ଅବସ୍ଥାରେ ଦେଖା ହୋଇଥିଲା ମନେ ପଡୁନାହିଁ ।

ଦୟାନିଧି—ସାର୍, ପନ୍ଦର ବର୍ଷ ତଳର କଥା । କିମିତି ମନେ ରହିବ ?

ନରୋତ୍ତମ—ଆପଣଙ୍କର ବାସସ୍ଥାନ ?

ଦୟାନିଧି—କହୁଛି, ସାର୍ । ପନ୍ଦର ବର୍ଷ ତଳେ ଆପଣଙ୍କର ମନେ ଥିବ – ସେତେବେଳେ ଆପଣ ନୂଆଁ କରି ଓକିଲାତି ଆରମ୍ଭ କରିଥାନ୍ତି ।

ନରୋତ୍ତମ—ଆରେ କଣ ମକଦ୍ଦମା ବିଷୟରେ ପରାମର୍ଶ ପାଇଁ ଆସିଛ ? ସେ ସବୁ ବିଷୟରେ ପରାମର୍ଶ ଦେବାକୁ ମୋର ଏବେ ଟିକିଏ ବେଳ କାହିଁ ?

ଦୟାନିଧି—ମୁଁ ଜାଣେ ସାର୍, ଆପଣ ଜନସେବା କାର୍ଯ୍ୟରେ ବ୍ୟସ୍ତ । ମୁଁ ମକଦ୍ଦମା କଥା କହୁନାହିଁ; ମୁଁ କହୁଥିଲି—ଆପଣଙ୍କର ମନେ ଥିବ—ପନ୍ଦର ବର୍ଷ ପୂର୍ବେ...

ନରୋତ୍ତମ – ଆରେ ଛାଡ଼, ପନ୍ଦର ବର୍ଷ ପୂର୍ବର କଥା । ଆଜିର କଥା କଣ ଅଛି କହ ।

ଦୟାନିଧି—ସେଇ କଥା କହୁଛି ସାର୍ । ଆଜର କଥା କହୁଛି । ଆଜକୁ ପନ୍ଦର ବର୍ଷ ପୂର୍ବେ ଆପଣ ଆମ ଗାଁ କୃଷ୍ଣନ-ପୁରକୁ ଯାଇଥିଲେ ।

ନରୋତ୍ତମ—କଣ ହେଲା ସେଥିରୁ ?

ଦୟାନିଧି—ଗୋଟିଏ ବଣ୍ଟୁଆରା ମୋକଦ୍ଦମାରେ ସମ୍ପତ୍ତିର ତାଲିକା କରିବା ପାଇଁ ସବ୍ ଜଜ୍ ସାହେବ ଆପଣଙ୍କୁ କମିଶନର୍ ମୁକରର୍ କରିଥିଲେ, ଆଉ ଆପଣ ଆମ ଗାଆଁକୁ ଯାଇଥିଲେ ।

ନରୋତ୍ତମ—ହଉ, ହେଲା । କଣ ହେଲା ସେଠୁ ?

ଦୟାନିଧି—ସାର୍, ଆପଣଙ୍କର ମନେ ଥିବ—ସେଠାରେ ପକ୍ଷ-ମାନଙ୍କ ମଧ୍ୟରୁ ଜଣେ ଯୁବକ ଆପଣଙ୍କୁ ଅନୁରୋଧ କରି-ଥିଲା, ତାର ବ୍ୟକ୍ତିଗତ କେତେକ ସମ୍ପତ୍ତି ସେ ତାଲିକାରୁ ବାଦ୍ ଦେବାକୁ । ଆଉ ସେଥିପାଇଁ ଆପଣଙ୍କୁ ଦୁଇଟି ସୁନା ଖଡୁ ଉପହାର ଦେଇଥିଲା ।

ନରୋତ୍ତମ—କଣ କହିବାକୁ ଚାହୁଁ ତୁମେ ?

ଦୟାନିଧି—ସାର୍; ସେଇ ଯୁବକଟି ହେଉଛି ମୁଁ—ଦୟାନିଧି ସାହୁ । ସାର୍, ବଳା ଦୁଇଟିର ଓଜନ ଥିଲା ଚଉଦ ଭରି । ଆଜି-କାଲି ବଜାରରେ ତାର ଦାମ୍ ହେବ ସାଢ଼େ ଚାରି ହଜାର ଟଙ୍କା ।

ନରୋତ୍ତମ—( ଉତ୍ତେଜିତ ହୋଇ ) କଣ କହିବାକୁ ଚାହୁଁ ତୁମେ ? ସେସବୁ ବିଷୟ ଏବେ ଉଠୁଛି କାହିଁକି ?

ଦୟାନିଧି—ସାର୍, ସେଇ ବଳ ଯୋଡ଼କ ଫେରସ୍ତ ନେବାକୁ ଆସିଛି ।

ନରୋତ୍ତମ—ଫେରସ୍ତ ନେବାକୁ ଆସିଛ ? କାହିଁକି ? ତୁମେ ସେ ସମୟରେ ଯେଉଁ କାମ ପାଇଁ ବଳ ଯୋଡ଼କ ଦେଇଥିଲ, ସେ କାମ କଣ ହେଲ ନାହିଁ ?

ଦୟାନିଧି—କାମ ତ ହେଲା, ସାର୍ ।

ନରୋତ୍ତମ—ତେବେ ?

ଦୟାନିଧି—ସାର୍, ମୁଁ ଆଜି ସନ୍ଧ୍ୟାରେ ଆପଣଙ୍କର ବକ୍ତୃତା ଶୁଣିଥିଲି ।

ନରୋତ୍ତମ—ମୁଁ କଣ କିଛି ଭୁଲ୍ କହିଲି କି ?

ଦୟାନିଧି—ନାହିଁ, ସାର୍ । ଆପଣ ପକ୍କା କଥା କହିଲେ । ଗୋପାଳ ବାବୁଙ୍କ ଭଳି ଦୁର୍ନୀତିଗ୍ରସ୍ତ ଲୋକଙ୍କୁ ନ ପଠାଇ ନିଷ୍କଳଙ୍କ ଲୋକଙ୍କୁ ଆମର ପ୍ରତିନିଧି ସଭାକୁ ପଠାଇବାକୁ ଆପଣ ଲୋକଙ୍କୁ ଅନୁରୋଧ କରିଥିଲେ । ଆପଣଙ୍କ ଜୀବନରେ ଯାହା କିଛିଏ କଳଙ୍କ ଅଛି, ସେ ଟିକକ ପୋଛି ଦେବା ପାଇଁ ମୁଁ ଆପଣଙ୍କୁ କହୁଛି । କେବଳ ସେଇଥିପାଇଁ ବଳଯୋଡ଼ିକ ଫେରାଇ ଦେବାକୁ କହୁଛି । ବଳଯୋଡ଼ିକ ଫେରାଇ ଦେଲେ ଆପଣ ଆମର ଯୋଗ୍ୟ ପ୍ରତିନିଧି ହେବେ ।

ନରୋତ୍ତମ—(ଉତ୍ତେଜିତ ହୋଇ ଠିଆ ହୋଇ) ତୁମେ କଣ ମୋତେ 'ବ୍ଲାକ୍ ମେଲ୍' କରିବାକୁ ଆସିଛ ?

ଦୟାନିଧି—ସାର୍, ଆପଣ ତ ତୁଚ୍ଛାଟାରେ ରାଗି ଯାଉଛନ୍ତି ।

ନରୋତ୍ତମ—You get out, ତୁମେ ଏଠାରୁ ଚାଲିଯାଅ ।

ଦୟାନିଧି—ଚାଲି ଯିବି, ସାର୍ ? କିନ୍ତୁ ଯଦି ଗୋପାଳ ବାବୁ ଏ କଥା ଜାଣନ୍ତି ।

ନରୋତ୍ତମ—ଜାଣିଲେ ସେ ମୋତେ ଫାଶୀ ଦେବେ ? ( ପ୍ରକୃତସ୍ଥ ହୋଇ ) ଆଚ୍ଛା, ଉଠ, ରହ, ବସ । ଦେଖ, ଭୋଟ ସମୟରେ ତୁମେ ଏସବୁ କଥା ବାଢ଼ ବସିଲେ ଲୋକେ ତୁମର କଥା ବିଶ୍ୱାସ କରିବେଟି ? ତେବେ ତୁମେ ଯଦି ଏ ବିଷୟରେ ଆଉ ପାଟି ନ ଫିଟାଅ, ତେବେ ମୁଁ ଏ ବିଷୟରେ ଗୋଟିଏ କାମ କରିବାକୁ ରାଜି ଅଛି । ତୁମ ଗାଆଁରେ ସ୍କୁଲ ଅଛିଟି ?

ଦୟାନିଧି—ହଁ ସାର୍ । ଉଚ୍ଚପ୍ରାଥମିକ ଶ୍ରେଣୀ ପର୍ଯ୍ୟନ୍ତ ଅଛି । ଏବେ ତାକୁ ମାଇନର୍ ସ୍କୁଲ କରିବା ଚେଷ୍ଟାରେ ଅଛୁଁ ଆମେ ।

ନରୋତ୍ତମ—ଖୁବ୍ ଭଲ କଥା । କାଲି ନ ହେଲେ ପଅର ଦିନ ମୁଁ ନିଜେ ତୁମ ଗାଆଁକୁ ଯିବି, ହଜାରେ ଟଙ୍କା ଦେଇ ଆସିବି । ସ୍କୁଲ ସେକ୍ରେଟେରୀ, ପ୍ରେସିଡେଣ୍ଟ, ପଞ୍ଚାୟତ ମେମ୍ବର ସମସ୍ତଙ୍କୁ କହି ରଖିଥିବ ।

ଦୟାନିଧି—ସାର୍, ସେ ଗାଆଁର ପଞ୍ଚାୟତ ମେମ୍ବର ଓ ସେକ୍ରେଟେରୀ ମୁଁ ନିଜେ ।

ନରୋତ୍ତମ—ତେବେ ତ ଖୁବ୍ ଭଲ କଥା ।

ଦୟାନିଧି—କିନ୍ତୁ, ସାର୍, ଅନ୍ତତଃ ଦୁଇ ହଜାର ଟଙ୍କା ନ ହେଲେ ହେବ ନାହିଁ । ଆମ ଗାଆଁ ବଡ଼ ଗରିବ ଗାଆଁ ।

ନରୋତ୍ତମ—ଆରେ ବାବୁ ! ଭୋଟ ପରେ ସରକାରଙ୍କଠାରୁ କଣ ଟଙ୍କା ଯୋଗାଡ଼ କରିବା ନାହିଁ ? ହଉ, ହଜାରେ ଟଙ୍କାରେ କଥା ଛିଣ୍ଡିଲ ?

ଦୟାନିଧି—ନାଇଁ, ସାର୍ ।

ନରୋତ୍ତମ—( ଗରମ ହୋଇ ) ଦେଖ, ମୋ ପାଖରେ ଆଜି ଟଙ୍କା ନାହିଁ । ଏମିତି ଦେହ ଖଣ୍ଡ ଗାଆଁ ଅଛି । ହଜାରେ ଟଙ୍କାରେ ଯଦି ରାଜି ନ ହୁଅ, ତେବେ ତୁମର ଯାହା ଇଚ୍ଛା ତାହା କର । ଆଜି କଣ ?

ଦୟାନିଧି—ହଉ, ସାର୍ । ସେଇ ହଜାରେ ଟଙ୍କା ହେଉ । ତେବେ କଥା ରହିଲ – ପଅର ଦିନ ଅର୍ଥାତ୍ ଭୋଟର ପୂର୍ବ ରାତିରେ ଆମେ ଆପଣଙ୍କୁ ଅପେକ୍ଷା କରିଥିବୁ ।

ନରୋତ୍ତମ—ଆଚ୍ଛା, ହେଉ ।

( ଦୟାନିଧି ସାହୁଙ୍କର ପ୍ରସ୍ଥାନ )

ନରୋତ୍ତମ—( ଇତସ୍ତତଃ ପଦଚାରଣା କରି ) କଣ କରିବା ? କିଛି ବୁଦ୍ଧି ଦିଶୁ ନାହିଁ ।

( ଟେବୁଲ୍‌ରେ ମୁଣ୍ଡ ଆଉଜି ବସି ପଡ଼ିଲେ—ଡାହାଣ ଆଡ଼ୁ ନିର୍ମଳ ଦେବୀଙ୍କର ପ୍ରବେଶ । )

ନିର୍ମଳ—( ନରୋତ୍ତମ ବାବୁଙ୍କ ଦେହ ହଲାଇ ଦେଇ ) କଣ ଶୋଇଲଣି କି ? (ନରୋତ୍ତମ ବାବୁ ପ୍ରକୃତିସ୍ଥ ହେଲେ) ଆଜି କଣ କିଛି ଖାଇବ ନାହିଁ ?

ନରୋତ୍ତମ—ନିର୍ମଳ, ଟିକିଏ ବସ, ଗୋଟିଏ ଗୁରୁତର କଥା ଅଛି ।

ନିର୍ମଳା—ଘତ ତଅଣ ଗରମ ଜଳ ବାଢ଼ି ଦେଇଛୁ । ତୁମେ ଗପି ବସିଲେ ପୁଣି ଅଧବଉ ହୋଇଯିବ । ଭାତ ଡାଲି ଥଣ୍ଡା ହୋଇଯିବ ।

ନରୋତ୍ତମ—ଖିଆପିଆ କଥା ଥାଉ । ଗୋଟିଏ ଗୁରୁତର କଥାରେ ତୁମର ପରାମର୍ଶ ଗୃହୁଁଛୁ ।

( ନିର୍ମଳା ବସିଲେ )

ନରୋତ୍ତମ—ମନେ ଅଛି ତୁମର, ଯେତେବେଳେ ମୁଁ ନୂଆଁ ହୋଇ ଓକିଲତ ଆରମ୍ଭ କରିଥାଏଁ ।

ନିର୍ମଳା—ସେ କଥା ଏତେ ରାତରେ ମନେ ପକାଇ କି ଲଭ ? "ସବୁ ଦିନେ ନାହିଁ ଗୋ ବୁଡୀ, ଗୃହିଣୀ ରାତର ଘବ ପୀରତ ।"

ନରୋତ୍ତମ—ଓଃ ତୁମେ ଯେ ସଙ୍ଗୀତରେ ଗଦ୍‌ଗଦ ହୋଇ ଯାଉଛ । ଶୁଣ, ତୁମର ମନେ ଅଛି—ମୁଁ ଦିନେ ମଫସଲରୁ ଫେରି ଯୋଡ଼ିଏ ସୁନା ବଲା ତୁମକୁ ଦେଇଥିଲି ।

ନିର୍ମଳା—ହଁ, ହଁ । ସେଦିନ କେତେ ଗେଲରେ ତୁମେ ତାହା ମୋ ହାତରେ ପିନ୍ଧାଇ ଦେଇଥିଲ । ସେ ଦିନର ପ୍ରେମ ଆଉ ଅଛି ତୁମର ଏବେ ? ସବୁବେଳେ ପୋଡ଼ାମୁହାଁ ଭେଟ ଆଉ ଭେଟ । ମୋ ଆଡ଼େ ଗୃହିଁବାକୁ ମଧ୍ୟ ତୁମର ବେଳ ନାହିଁ ।

ନରୋତ୍ତମ—ଶୁଣ, ସେଇ ସୁନା ବଲା ଭାଙ୍ଗି ତୁମେ ଏଇ ସୁନାଚୁଡ଼ି ଗଢ଼େଇଛ । ଯେଉଁ ଲୋକ, ମୋତେ ଏ ସୁନାଚୁଡ଼ି ଦେଇ-ଥିଲା, ସେ ଏବେ ତାହା ଫେରସ୍ତ ନେବାକୁ ଆସିଥିଲା ।

ନିର୍ମଳା—ତୁମେ କଣ ମାଗଣାରେ ଆଣିଥିଲ ବଳା ଯୋଡ଼ିକ ? ଯଦି ମାଗଣାରେ ଆଣିଥିଲ, ତେବେ ପନ୍ଦର ବର୍ଷ ପରେ ତାହା ଫେରସ୍ତ ଦେବ ? ତୁମେ ହକ୍ କାମ କରି ଓକିଲ ଫିଜ୍ ହିସାବରେ ବଳା ଯୋଡ଼ିକ ଆଣିଥିବ । ଏବେ ପୁଣି ତାହା ଫେରାଇ ଦେବ କାହିଁକି ?

ନବୀନଚନ୍ଦ୍ର—ସେତେବେଳେ ମୁଁ ତୁମକୁ ପୂରା କଥା ଖୋଲି କହି ନ ଥିଲି । ସେ ଲୋକଟା ତାର କେତେକ ସମ୍ପତ୍ତି ହିସାବ କାଗଜରୁ ବାଦ୍ ଦେବା ପାଇଁ ମୋତେ ବଳା ଯୋଡ଼ାକ ଦେଇଥିଲା । ଏବେ ଆସି କହୁଛି, ବଳା ଯୋଡ଼ାକ ଫେରାଇ ନ ଦେଲେ ସେ ଗୋପାଳ ବାବୁଙ୍କୁ ଏ କଥାଟି କହି ଦେବ । ସେଇଥିପାଇଁ ମୁଁ ତୁମକୁ କହୁଛି, ତୁମ ସୁନାଚୁଡ଼ି ଚାରି ଖୋଲି ମୋତେ ଦେଇଥାଅ । ତାହା ବିକି ଲୋକଟାକୁ ଟଙ୍କା ଦେଇଦେବା । ଭୋଟ ପରେ ମୁଁ ତୁମକୁ ଆହୁରି ବଢ଼ିଆ ଚୁଡ଼ି ଗଢ଼ାଇଦେବି ।

ନିର୍ମଳା—( ଉଚ୍ଚ ସ୍ୱରରେ ହସି ହସି ) ଓଃ ସୁନ୍ଦର । କି ଚମତ୍କାର ଗପ ଗଢ଼ିପାର ତୁମେ ଏଇ ଅଳ୍ପ ସମୟ ଭିତରେ । ଆଚ୍ଛା, ତୁମେ ଏ ଗପଟି ଲେଖି ଗୋଟିଏ ବହି ଛପାଉ ନାହିଁ ? ଫକୀରମୋହନ, ଗୋପୀନାଥ ମହାନ୍ତିଙ୍କ ଭଳିଆ ତୁମର ଗପମାନ ପଢ଼ି ଲୋକେ ବାହାବା କରିବେ ।

ନବୀନଚନ୍ଦ୍ର—( ଉଠି ପଡ଼ି ଇତସ୍ତତଃ ପଦଚାରଣା କରି ) ତେବେ ତୁମେ କଥାଟାକୁ ବାଜେ ଗପ ବୋଲି ଉଡ଼ାଇ ଦେବାକୁ ଚାହୁଁଛ ?

ନର୍ମିଳା – କଏ କହିଲା ବାଜେ ଗପ ବୋଲି । ଗଳ୍ପଟି ଅତି ଚମତ୍କାର । ଟଲେଷ୍ଟି ଜାଣିଲେ ଏଇଥିରେ ହିଁ ଜାତୀୟ ପୁରସ୍କାର ପାଞ୍ଚ ହଜାର ଟଙ୍କା ମିଳିଯିବ । ତୁମର କେତେ ପଡ଼ି ରୂପକୁ କଏ ପଚାରେ ?

ନରୋତ୍ତମ—( ଉତ୍ତେଜିତ ହୋଇ ) ନିର୍ମିଳା, ତୁମେ ମୋ କଥା ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହ ?

ନର୍ମିଳା—ତୁମେ ନିଜେ କଥାଟିକୁ ବିଶ୍ୱାସ କରୁଛ ?

ନରୋତ୍ତମ – ଆଚ୍ଛା, କେଉଁ ରାଣ ପକାଇଲେ ତୁମେ କଥାଟି ବିଶ୍ୱାସ କରିବ କହିଲ ?

ନର୍ମିଳା—( ହସି ) ସାଧାରଣ ମାଇକିନିଆଙ୍କ ଭଳିଆ ରାଣକୁ ଜବରଦସ୍ତି ବିଶ୍ୱାସ କରାଇବାର ଅସ୍ତ୍ର କରି ପାରନ୍ତ କି ? ଆଚ୍ଛା, ରାଣ ପକାଇବାର ଦରକାର ନାହିଁ । ମୁଁ ତୁମର ସବୁ କଥା ବିଶ୍ୱାସ କରୁଛି । କଣ କହିବାକୁ ଚାହଁ ତୁମେ ?

ନରୋତ୍ତମ—ମୁଁ ଚାହେଁ ନଗଦ-ନାରାୟଣ । ନ ଦେଲେ ହିନସ୍ତା । ପଅର ଦିନ ରାତି ପର୍ଯ୍ୟନ୍ତ ସମୟ ଅଛି । ସେଇ ସମୟରେ ତାଙ୍କୁ ଅନ୍ତତଃ ହଜାରେ ଟଙ୍କା ଦେବାର ପ୍ରତିଶ୍ରୁତି ଦେଇଛି । ଯଦି ଦିଆ ନ ଯାଏ, ତେବେ ସେଇଠାରେ ଭୋଟ ମିଳିବ ନାହିଁ – ମିଳିବ ଖାଲି ବଦନାମ । ତୁମେ ହେଉଛ ମୋର ଘରର ଲକ୍ଷ୍ମୀ । ଟଙ୍କାର ବନ୍ଦୋବସ୍ତ କର, ନ ହେଲେ ଏ ବିପଦରୁ ଉଦ୍ଧାରର କିଛି ଉପାୟ ମୋତେ କହ ।

ନିର୍ମଳ— ଆଚ୍ଛା, ଏଥିପାଇଁ ଏତେ ବ୍ୟସ୍ତ ହେଉଛ କାହିଁକି ? ଟିକିଏ ଧୀର ସ୍ଥିର ଭାବରେ ଚିନ୍ତାକର । ଆଚ୍ଛା, ଏ କଥା କାହିଁକି ଭାବୁ ନାହିଁ ଯେ, ଯେଉଁ ଗାଆଁରୁ ଯେତେ ଭୋଟ ପାଇବାର ଆଶା ଥିଲା, ସେ ଭୋଟ ନ ପାଇଲେ କଣ ଦୁନିଆଁ ଓଲଟି ଯିବ, ନା ତୁମର ସତକୁ ସତ ହାରିଯିବାର ସମ୍ଭାବନା ଅଛି ?

ନରୋତ୍ତମ—ନାହିଁ, ସେମିତି କିଛି ନିଶ୍ଚୟ ନାହିଁ । ତେବେ ଏ ଏସମୟରେ ଅସମ୍ଭବ ବି ସମ୍ଭବ ହୋଇପାରେ ।

ନିର୍ମଳ—ତେବେ ଗୋଟିଏ କାମ କରୁ ନାହିଁ ? ପଅର ଦିନ ରାତିରେ ଯିବା କଥାଟା ଗଡ଼ାଇଦିଅ ଓ ତହିଁ ଆର ଦିନ ଅର୍ଥାତ୍ ଭୋଟ ଦିନ ସେଠାକୁ ଯିବାକୁ ଖବର ପଠାଅ । ଭୋଟ ଦିନ ଆର ବେଳକୁ ଯାଇ ସେଠାରେ କହି ଦେଇ-ଆସିବ ଟିକା ଯୋଗାଡ଼ ହୋଇପାରିଲ ନାହିଁ ।

ନରୋତ୍ତମ—କିନ୍ତୁ ମୁଁ ଯେ ତାଙ୍କୁ କଥା ଦେଇଛି ।

ନିର୍ମଳ—ତୁମେ ମୋତେ ଯେତେ କଥା ଦେଇଛ, ସେଥିରୁ କେତୋଟା କଥା ପାଳନ କର, କହିଲ ଭଲ ? ତୁମ ସଂସ୍କୃତରେ ମଧ କଥା ଅଛି—ସ୍ତ୍ରୀଲୋକଙ୍କୁ ଓ ଯୁଦ୍ଧ ସମୟରେ ମିଛ କହିଲେ ପାପ ହୁଏ ନାହିଁ । ମୋତେ ମିଛ କହିଲେ ତୁମର ପାପ ହୁଏ ନାହିଁ । ତେବେ ଭୋଟ-ଯୁଦ୍ଧରେ ମିଛ କହିବା ପାପ ନୁହେଁ, ବରଂ ମୋ ମତରେ ଏହା ମହାପୁଣ୍ୟ ବୋଲି ଧରିନିବା ଉଚିତ ।

ନରୋତ୍ତମ—କିନ୍ତୁ ସୁନାବଲି ଯୋଡ଼ା କଥା ଯଦି ପ୍ରଚାର ହୋଇଯାଏ ?

ନିର୍ମଳ—ଓଃ, ଏଇଥି ପାଇଁ ଏତେ ମୂଣ୍ଡ ବଥା ? ବୈଜ୍ଞାନିକ-ଯୁଗର ସମୟରେ ଏତେ କାଦୁଅ ଫୋପଡ଼ା ମଧ୍ୟରେ, ଢଙ୍କାରେ ମିଛ ଯୁଗର ଭିତରେ ଏଇ ଟିକିଏ ସତ କଥା ଚିନ୍ତା ପଡ଼ିବ ବୋଲି ଭାବୁଛ ? ନା, ନା, ଏ ସବୁ ଚିନ୍ତା ତୁମେ ଛାଡ଼ । ମୋର ବିଶ୍ୱାସ ତୁମେ ଏବେ ଗରମ ଭାତ, ଡାଲି, ତରକାରି, ମାଛ ଭଜା ଖାଇଲା ପରେ ଏହି ଅପବାଦଟିକୁ ମଧ୍ୟ ସେଇ ସଙ୍ଗେ ହଜମ କରିପାରିବ । ଚାଲ, ଉଠ ।

(ଉଭୟେ ଡାହାଣ ଆଡ଼େ ବାହାରି ଗଲେ)

—ଯବନିକା—



# କବିର ମୃତ୍ୟୁ

ଯକ୍ଷ୍ମା ସ୍ୱାସ୍ଥ୍ୟ ନିବାସର ଗୋଟିଏ କୋଠରୀ । ସମୟ ଅର୍ଦ୍ଧ ରାତ୍ରି । ପୃଷ୍ଠ ଭୂମିରେ ବାମ ପଟରେ ଗୋଟିଏ କାନ୍ଥ ଓ ଡାହାଣ ପଟରେ ଗୋଟିଏ ଝରକା । ଝରକାରେ ଚୌକାଠ ସୁଦ୍ଧା ନାହିଁ । ପୁରାପୁରି ମଇଳା ଝରକା ଉପରୁ ଗୋଟିଏ ଧଳା କେନ୍ଭାସ ପର୍ଦ୍ଦା ଝୁଲୁଛି ।

ମଝିରେ ଗୋଟିଏ ଖଟ । ତହିଁରେ ଜଣେ ଭଦ୍ରଲୋକ ଶାୟିତ ଅବସ୍ଥାରେ । ତାଙ୍କର ସାରା ଦେହ କାନ୍ଧ ପର୍ଯ୍ୟନ୍ତ ଲାଲ କମ୍ବଳରେ ଢଙ୍କା । କେବଳ ମୁହଁଟି ଦେଖା ଯାଉଛି । ମୁହଁରେ ରୂର ସ୍ଥ' ଦିନର ନିଶ ଦାଢ଼ି ଥିଲେ ସୁଦ୍ଧା ମୁହଁ ଖୁବ୍ ଦୁର୍ବଳ ଓ କଙ୍କାଳସାର, ଆଖି ଦୁଇଟି କୋଟରଗତ ଜଣା ଯାଉଛି । ବୟସ ଅନୁମାନରେ ତିରିଶ କି ବତିଶ ବର୍ଷ ହେବ । ଖଟ ତଳେ ଗୋଟିଏ ଷ୍ଟିଲ ଟ୍ରଙ୍କ । ଖଟପାଖରେ ଗୋଟିଏ ଷ୍ଟିଲ ଟେବୁଲରେ ଗୋଟିଏ କାଚର ଜଗ୍ ଓ ଗ୍ଲାସ ଓ ଗୋଟିଏ ଔଷଧ ଶିଶି । ଖଟର ସେପାଖରେ କାନ୍ଥରେ ଗୋଟିଏ କଣ୍ଟାରେ ଗୋଟିଏ କୋଟ୍ ଝୁଲୁଛି ।

ବାମ ପଟ ଦ୍ୱାରରୁ ପ୍ରବେଶ କଲେ ଏକ ମୂର୍ତ୍ତି । ତାଙ୍କର ସାରା ଦେହ (ମୁଣ୍ଡ ସୁଦ୍ଧା) ଧଳା ଚାଦରରେ ଢ଼ାଙ୍କି ହୋଇଛି । କେବଳ ଆଖି ଦୁଇଟି, ନାକ ଓ ମୁହଁ ଛଡ଼ା ଆଉ ଶରୀରର ଅନ୍ୟ କୌଣସି ଅଂଶ ଦେଖାଯାଉ ନାହିଁ ।

ଆଗନ୍ତୁକ ଧୀର ପଦ କ୍ଷେପରେ କୋଠରୀକୁ ପଶି ରୋଗୀଙ୍କୁ ଦେଖିଲେ । ଠିକ ସେହି ସମୟରେ ରୋଗୀଙ୍କର ମୁହଁ ବେଦନାରେ ବିକୃତ ହେଲା । ସେ ଅସ୍ଫୁଟ ଶବ୍ଦ କଲେ 'ଓଃ ।'

ଆଗନ୍ତୁକ—(ଧୀର ସ୍ୱରରେ ଶୋଇଲା ଲୋକକୁ ଉଠାଇଲା ପରି) ଧନଞ୍ଜୟ ! ଧନଞ୍ଜୟ ବାବୁ !

ରୋଗୀ—(ଆଖି ଖୋଲି, ଆଗନ୍ତୁକ ଆଡ଼କୁ ନିରେଖି ଚାହିଁ କ୍ଷୀଣ, ସ୍ୱରରେ) କିଏ ? ନର୍ସ ? ନା, କିଏ ତୁମେ ?

ଆଗନ୍ତୁକ—ମୋତେ ଚିହ୍ନିପାରୁ ନାହିଁ ?

ଧନଞ୍ଜୟ—ନା, ନା, । ଏପରି ଅବସ୍ଥାରେ କ'ଣ ମୋର ମଣିଷ ଚିହ୍ନିବାର ଶକ୍ତି ଅଛି ?

ଆଗନ୍ତୁକ—ନା, ମୁଁ ମଣିଷ ନୁହେଁ । ମୁଁ ମୃତ୍ୟୁ ।

ଧନଞ୍ଜୟ—(ମୁହଁ ଫେରାଇ ନେଇ, ଭୟରେ) ମୃତ୍ୟୁ ? ତୁମେ ଏ ଅସମୟରେ ? କ'ଣ ଚାହଁ ? ତୁମେ ଚାଲି ଯାଅ ।

ମୃତ୍ୟୁ—ଚାଲିଯିବି ? ନା, ନା, ମୁଁ ଇଚ୍ଛା କଲେ ମଧ୍ୟ ଏଠାରୁ ଫେରି ଯାଇ ପାରିବି ନାହିଁ । ତୁମେ କ'ଣ ଏବେ ସୁଦ୍ଧା ବଞ୍ଚି ରହିବାକୁ ଚାହଁ ?

ଧନଞ୍ଜୟ—ଏ ସୁନ୍ଦର ପୃଥିବୀରେ କିଏ ବଞ୍ଚି ରହିବାକୁ ଚାହେଁ ନାହିଁ ?

ମୃତ୍ୟୁ —କିନ୍ତୁ ଯକ୍ଷ୍ମା ରୋଗର କୋଟି କୋଟି ଜୀବାଣୁ ତୁମର ଦୁଇଟାଯାକ ଫୁସ୍‌ଫୁସ୍‌କୁ ନିଃଶେଷ ଓ କ୍ଷୀଣ କରି ସାରିଛନ୍ତି । ତୁମର ଆଜି ନିଃଶ୍ୱାସ ନେବାର ମଧ୍ୟ ଶକ୍ତି ନାହିଁ । ଡାକ୍ତରମାନେ ତୁମର ସବୁ ଆଶା ଛାଡ଼ି ଦେଇଛନ୍ତି । ଏତେ ଯନ୍ତ୍ରଣାମୟ ଶରୀର ନେଇ ତଥାପି ତୁମେ ବଞ୍ଚି ରହିବାକୁ ଚାହଁ ?

ଧନଞ୍ଜୟ—ହଁ, ମୋର ଯେ ଆହୁରି ଅନେକ କବିତା ଲେଖିବାର ବାକି ଅଛି । ମୋର ସୃଷ୍ଟି ଏ ପର୍ଯ୍ୟନ୍ତ ଅପୂର୍ଣ୍ଣ ରହିଛି । ଜୀବନର ସୌନ୍ଦର୍ଯ୍ୟକୁ ଯେ ମୁଁ ଏ ପର୍ଯ୍ୟନ୍ତ ରୂପ ଦେଇ ପାରିନାହିଁ । ଆଉ କିଛି ଦିନ ସମୟ ଦିଅ ମୋତେ ।

ମୃତ୍ୟୁ—କିନ୍ତୁ ତୁମେ ତ ‘ମୃତ୍ୟୁ ମଙ୍ଗଳମୟ’ କବିତା ଲେଖିଛ ?

ଧନଞ୍ଜୟ—(ଆଗ୍ରହ ସହକାରେ ମୃତ୍ୟୁ ଆଡ଼କୁ ଦେଖି) ତୁମେ ପଢ଼ିଛ ମୋର ସେଇ କବିତା ?

ମୃତ୍ୟୁ—ନା, ପଢ଼ି ନାହିଁ । ତେବେ ମୁଁ ଜାଣିଛି ତୁମେ ମୃତ୍ୟୁ ବିଷୟରେ ବି କବିତା ଲେଖିଛ ।

ଧନଞ୍ଜୟ—ଶୁଣ, (ମନେ ପକାଇବାକୁ ଚେଷ୍ଟା କରି) ଓଃ କିଛି ମନେ ପଡ଼ୁନାହିଁ । ମୋର ସ୍ୱାସ୍ଥ୍ୟ ଭଲ ଥିଲେ, ମୁଁ ଏବେ ସେ କବିତାଟି ନିଜ ମନରୁ ଆବୃତ୍ତି କରି ଯାଆନ୍ତି । କିନ୍ତୁ ମୋର ସ୍ମରଣ ଶକ୍ତି ବି ଭଲ ନାହିଁ । କବିତାଟି ମୋର ମନେ ପଡ଼ୁନାହିଁ ।

ଆଚ୍ଛା, ମୋର ଏ ଖଟ ତଳେ ଯେଉଁ ଟ୍ରଙ୍କ ଅଛି, ତା’ର ଚାବି ମୋର ଏଇ କୋଟ ପକେଟରେ ଅଛି । ଟ୍ରଙ୍କଟି

ଟିକିଏ ଖୋଲ । ସେଥିରୁ ମୋର କବିତାଖାତାଟି ଟିକିଏ ବାହାର କର । ମୁଁ ତୁମକୁ 'ମୃତ୍ୟୁ ମଙ୍ଗଳମୟ' କବିତାଟି ପଢ଼ି ଶୁଣାଏଁ । ମୁଁ ତୁମ ବିଷୟରେ କବିତା ଲେଖିଛି ବୋଲି ତୁମେ ଜାଣିଛ । କବିତା ଶୁଣିଲେ ତୁମେ ବୁଝି-ପାରିବ; ତୁମ ବିଷୟରେ ଏତେ ସୁନ୍ଦର କବିତା ଆଉ ଅନ୍ୟ କୌଣସି କବି ଲେଖି ନାହାନ୍ତି ।

ମୃତ୍ୟୁ—ଥାଉ । ତୁମର କବିତା ଶୁଣିବାକୁ ଏବେ ମୋର ସମୟ ନାହିଁ ।

ଧନଞ୍ଜୟ—(ଅଭିମାନଭରା ସ୍ୱରରେ) ତୁମର ବି ସମୟ ନାହିଁ ? ତୁମେ ପର୍ବା କାଳ ? ମୋର କବିତା ଶୁଣିବାକୁ ତୁମର ବି ସମୟ ନାହିଁ ?

ତୁମେ କ'ଣ କହି ପାରିବ କାଳ ଦେବତା, ମୋର କବିତା ଶୁଣିବାକୁ ମନୁଷ୍ୟର କାହିଁକି କେତେବେଳେ ସୁଦ୍ଧା ସମୟ ନ ଥାଏ ? କେତେ କବିଙ୍କ ପାଖକୁ ଯାଇଛି, କେତେ ସାହିତ୍ୟିକ, ସମ୍ପାଦକ, ସମାଲୋଚକ, ଲେଖକଙ୍କ ପାଖକୁ ଯାଇଛି ମୁଁ କେତେଥର ମୋର କବିତା ଶୁଣାଇବାକୁ । କିନ୍ତୁ କାହାରି ସମୟ ନାହିଁ ! କିଏ କହନ୍ତି—'ଏବେ ସମୟ ନାହିଁ, ଅନ୍ୟ ସମୟରେ ଆସିବେ । କିଏ କହନ୍ତି, 'ଓଃ ମୁଁ ଯେ ଏବେ ସିନେମା ଦେଖିବାକୁ ବାହାରିଛି, ଆପଣ କାଲି ସନ୍ଧ୍ୟାରେ ଆସନ୍ତୁ ।' ଏମିତି ସବୁ ସାହିତ୍ୟିକଙ୍କଠାରୁ ନିରାଶ ହୋଇ ଫେରିଛି ।

ମୃତ୍ୟୁ—କି ଦୁଃଖର କଥା ! କିନ୍ତୁ ତୁମେ କ'ଣ କେବେ କାହାକୁ ତୁମର କବିତା ଶୁଣାଇ ନାହଁ ?

ଧନଞ୍ଜୟ—ହଁ, କେତେବ କେବେ ଶୁଣାଇଛି । କିନ୍ତୁ ମୋର କବିତା ଶେଷ ହେବା ପୂର୍ବରୁ ଶ୍ରୋତାଙ୍କର ମୁହଁରୁ ହାଇ ବାହାରି-ବାର ଦେଖିଛି ବା ତାଙ୍କୁ ଢୁଳାଇ ପଡ଼ୁଥିବାର ଦେଖି କବିତା ପଢ଼ା ବନ୍ଦ କରି ପଚାରିଛି, ଶୁଣୁଛନ୍ତି ? ଓ ଚମକି ଉଠି ନିଦରୁ ଉଠୁଥିବା ଶ୍ରୋତାଙ୍କଠାରୁ ଉତ୍ତର ପାଇଛି, 'ବାଃ ଚମତ୍କାର କବିତା ତ ।'

ମୃତ୍ୟୁ—ତେବେ ଏଥିପାଇଁ ସମୟକୁ ଦୋଷ ଦେଇ କି ଲାଭ, ଲୋକେ ହୁଏତ ତୁମର କବିତାକୁ ଯଥେଷ୍ଟ ପରିମାଣରେ ଆକର୍ଷକ ବୋଲି ମନେ କଲେ ନାହିଁ । ହୁଏତ ତୁମର କବିତା ଉତ୍କୃଷ୍ଟ କବିତା ନୁହେଁ, ବା ହୁଏତ ପୁରାତନ ଯୁଗରେ ଯେପରି କବିତାର ଆଦର ଥିଲା, ଏବେ ଯୁଗ ବଦଳି ଯାଇଥିବାରୁ କବିତା ପ୍ରତି ଲୋକଙ୍କର ମମତା ମଧ୍ୟ ଲୋପ ପାଇଛି ।

ଧନଞ୍ଜୟ—କିନ୍ତୁ ମୁଁ ଯେ ମନ ପ୍ରାଣ ଦେଇ କବିତା ଲେଖିଛି କାଳି ! ମୋର ଜୀବନର ସମସ୍ତ ଶକ୍ତି ସାମର୍ଥ୍ୟ ବିନିଯୋଗ କରିଛି ପ୍ରକୃତି ଓ ଜୀବନର ସୌନ୍ଦର୍ଯ୍ୟକୁ ଭାଷା ଦେବାରେ । ଦୁନିଆର କ୍ଷଣସ୍ଥାୟୀ ରୂପ ରସ ଗନ୍ଧକୁ ଅମର କରିବାରେ ।

ମୃତ୍ୟୁ—କିନ୍ତୁ ତାହା କ'ଣ ଅମର ହେବ ତୁମର କବିତାରେ ?

ଧନଞ୍ଜୟ—ମୁଁ ଚେଷ୍ଟା କରିଛି ରାତିର ରଜନୀଗନ୍ଧାର ଗନ୍ଧକୁ ଅମୃତ-ମୟ କରିବା ପାଇଁ କବିତାର ଭାଷାରେ । ଆମ୍ରମୁକୁଳର

ସୁରଭି, ବାସନ୍ତୀ ଜ୍ୟୋତ୍ସ୍ନାରେ ପ୍ରତିଫଳିତ ନିର୍ଝରିଣୀର ଧବଳିମା, ଶରତ ପ୍ରଭାତରେ ପୂର୍ବାକାଶର ବର୍ଣ୍ଣସମ୍ଭାର, ନିଦାଘ ସନ୍ଧ୍ୟାରେ ନୀଡ଼ ପ୍ରତ୍ୟାଗତ ବିହଙ୍ଗମମାନଙ୍କର କଳକାକଳିକୁ ଭାଷାରେ ଚିତ୍ରଣ କରିଛି ମୁଁ । ତାହାଁରୁ ଅଧିକ ସୁନ୍ଦର ଭାବରେ ଚିତ୍ରଣ କରିଛି ମୁଁ ନବ ବଧୂର ମୁଗ୍‌ଧ ପ୍ରେମୋଚ୍ଛ୍ୱାସ, ମାତାର ବାତ୍ସଲ୍ୟ, ପଲ୍ଲୀ ସଭ୍ୟତାର ବିଭୀଷିକା ଓ ଆଧୁନିକ ଜୀବନର ଜୁଆର ଭଟ୍ଟା ।

ମୃତ୍ୟୁ—କିନ୍ତୁ ତୁମର କବିତା କ'ଣ ଅମର ହେବ, କବି ?

ଧନଞ୍ଜୟ—ଦିନେ ବିଶ୍ୱାସ ଥିଲା ମୋର କବିତା ମୃତ୍ୟୁଞ୍ଜୟ ହେବ । ମୁଁ ଚିରଜୀବୀ ହେବି । କିନ୍ତୁ ଏବେ ସେ ବିଷୟରେ ମୋର ଘୋର ସନ୍ଦେହ ଜାତ ହୋଇଛି । ମୋର ମୃତ୍ୟୁ ପରେ କ'ଣ ଲୋକେ ମୋର କବିତା ପଢ଼ିବେ ? ମୋର ଜୀବନକାଳ ମଧ୍ୟରେ ଯଦି ମୋର କବିତା ଲୋକଙ୍କର ହୃଦୟ ସ୍ପର୍ଶ କରି ପାରିଲା ନାହିଁ, ସାହିତ୍ୟିକମାନେ 'ପଠନୀୟ ନାହିଁ' ବୋଲି ମୋର କବିତାକୁ ଠେଲି ଦେଲେଣି, କିଏ ହେଲେ ଆଗ୍ରହ ଦେଖାଇ ନାହାନ୍ତି ମୋର କବିତା ଶୁଣିବାପାଇଁ, ତେବେ ମୋର ମୃତ୍ୟୁ ପରେ କାହାର ଆଉ ସମୟ ହେବ ମୋର କବିତା ଖାତା ଖୋଲି ପଢ଼ିବାକୁ ? ଏତେ ପରିଶ୍ରମ ମୋର ବ୍ୟର୍ଥ ହୋଇଛି । ମୋର ଜୀବନ ମଧ୍ୟ ବ୍ୟର୍ଥ ହୋଇଛି, ମୃତ୍ୟୁ ।

ମୃତ୍ୟୁ—ଆଚ୍ଛା, ତୁମେ ଯେତେବେଳେ ପ୍ରଥମେ ବୁଝିପାରିଲ ଯେ ତୁମର କବିତା ସାହିତ୍ୟିକମାନଙ୍କର ଆଦର ଲାଭ

କରୁ ନାହଁ, ସେତେବେଳେ ତୁମେ କବିତା ଲେଖା ଛାଡ଼ି ଦେଇ ଅନ୍ୟ ବୃତ୍ତି ଧରିଲ ନାହିଁ କାହିଁକି ? ତୁମେ ଶିକ୍ଷିତ ଯୁବକ । ବ୍ୟବସାୟ କରିଥିଲେ, ଗୃହସ୍ଥ କରିଥିଲେ, ତୁମେ ଆଜି ପ୍ରକୃତରେ ଧନଞ୍ଜୟ ହୋଇ ପାରିଥାନ୍ତ ।

ଧନଞ୍ଜୟ—କିନ୍ତୁ ମୃତ୍ୟୁ, ମୁଁ ମୃତ୍ୟୁଞ୍ଜୟ ହେବାର କଳ୍ପନା ନେଇ ଜୀବନ ଆରମ୍ଭ କରିଥିଲି । ଏକ ଉଚ୍ଚ ଆଦର୍ଶ, ଜୀବନର ମହାନ୍ ଲକ୍ଷ୍ୟ ନେଇ ଜୀବନଯାତ୍ରା ଆରମ୍ଭ କରିଥିଲି । ମୁଁ ଚାହୁଁଥିଲି କାଳିଦାସ, ଜୟଦେବ, ରବୀନ୍ଦ୍ରନାଥଙ୍କ ପରି ଅମର ହେବାକୁ । ମୁଁ ଚାହୁଁଥିଲି ମୋର ଜୀବନ କାଳରେ, ମୋର ମୃତ୍ୟୁପରେ ମୋର କବିତା ପଢ଼ି ଲୋକେ ବିଶ୍ୱକୁ ମଧୁମୟ, ଆନନ୍ଦମୟ ଦେଖିବେ, ଦୁଃଖକୁ ଭୁଲିଯିବେ, ଦୁଃଖ ଦୈନ୍ୟ ଭୁଲିଯିବେ । ମୋତେ ହୃଦୟରେ ଟିକିଏ ସ୍ଥାନ ଦେବେ । ମୋର ଏଇ ଦେହ ଚିତା ଭସ୍ମସାତ୍ ହେବାର ବହୁବର୍ଷ ପରେ ସୁଦ୍ଧା ମୋର ଭାଷା ସେମାନଙ୍କର ହୃଦୟତନ୍ତ୍ରୀରେ ମଧୁର ମୂର୍ଚ୍ଛନା ଆଣି ଦେବ । କିନ୍ତୁ କାହିଁ ? ମୋର ସବୁ ସ୍ୱପ୍ନ ବ୍ୟର୍ଥ ହୋଇଛି । ମୋର ସବୁ ଆଦର୍ଶ କୁହେଳିକା ପରି ମୋର ଜୀବନ କାଳ ମଧ୍ୟରେ ଉଭେଇ ଯାଇଛି ।

ମୃତ୍ୟୁ—କିନ୍ତୁ ମୁଁ ପଚାରୁଛି, ତୁମେ ଘରଦ୍ୱାର କଲ ନାହିଁ କାହିଁକି ? ବ୍ୟବସାୟ ବା ଗୃହସ୍ଥ କଲ ନାହିଁ କାହିଁକି ? ତୁମପରି କେତେ କବି, କେତେ ସାହିତ୍ୟିକ ପୁସ୍ତକ ବ୍ୟବସାୟ କରି ବା ଗୃହସ୍ଥ କରି ବେଶ୍ ଆରାମରେ ଚଳୁଛନ୍ତି ।

ସମାଜ ସେମାନଙ୍କୁ ପ୍ରତିଷ୍ଠା ଦେଉଛି । ସାହିତ୍ୟ ସେବା ସେମାନଙ୍କର ଅର୍ଥଲାଭର ପନ୍ଥା ସୁଗମ କରୁଛି । ତୁମେ ସେହି ପନ୍ଥା ଗ୍ରହଣ କଲ ନାହିଁ କାହିଁକି ? ସେପରି କରିଥିଲେ, ତୁମକୁ ଏ ନିଃସ୍ୱ, ନିଃସହାୟ ଜୀବନ ଯାପନ କରିବାକୁ ପଡ଼ି ନ ଥାନ୍ତା, ଏ ଦୁରାରୋଗ୍ୟ ରୋଗ ତୁମକୁ ଅକାଳରେ ଗ୍ରାସ କରି ନ ଥାନ୍ତା, ଏତେ ଅଳ୍ପ ବୟସରେ ତୁମର ଜୀବନ ଶେଷ ହୋଇ ନ ଥାନ୍ତା ।

ଧନଞ୍ଜୟ—ତୁମେ ଯାହା କହୁଛ, ତାର ମର୍ମ ମୁଁ ଏବେ ବୁଝୁଛି— କିନ୍ତୁ ଅତି ବିଳମ୍ବରେ ମୁଁ ତୁମର କଥାର ସତ୍ୟତା ଉପଲବ୍ଧି କରି ପାରୁଛି, ମୃତ୍ତ୍ୟୁ ।

କିନ୍ତୁ ଦିନ ଥିଲା, ଯେତେବେଳେ ମୁଁ ତେଲ ଲୁଣର ଦୁନିଆଁକୁ ଘୃଣା କରୁଥିଲି । କେଉଁ ଅଫିସରେ ବସି ଘଣ୍ଟା ଘଣ୍ଟା ଧରି ଫାଇଲରେ ଟଙ୍କା ଅଣା ପାହୁଲାର ହିସାବରେ ଦିନ ପରେ ଦିନ ମନ ରହିବା, ଉପରର ହାକିମଙ୍କ ମର୍ଜି ସହିତ ନିଜର ମର୍ଜିର ତାଳ ପକାଇ ପକାଇ ଚାଲିବା, ଘରକୁ ଆସିଲା ପରେ ବଜାରକୁ ପୁଣି ବାଇଗଣ ଭେଣ୍ଡି ବୁଲିବାକୁ ଯିବା—ସେଠାରୁ ବଡ଼ ବନ୍ଧନ ମୁଁ କଳ୍ପନା କରି ପାରୁ ନ ଥିଲି । ମୋ ପକ୍ଷରେ ଚେଷ୍ଟା କରି ଦୁଇ ବର୍ଷ ଜେଲ ଖଟିବା ଯେପରି ଅସାଧ୍ୟ ଥିଲା ସେହିପରି ବା ତା'ଠାରୁ ଅଧିକ କଠୋର ଥିଲା ସରକାର ବା ନିଜର ତେଲଲୁଣର ହିସାବରେ ନିଜର ବହୁ ମୂଲ୍ୟ ଜୀବନର ଅପବ୍ୟୟ କରିବା । ମନୁଷ୍ୟ ପକ୍ଷରେ କ'ଣ ଅନ୍ତତଃ

ପାଇଁ ନିଜର ଆଦର୍ଶକୁ ବଳି ଦେବା ଉଚିତ ? ପେଟ ପାଇଁ ସାଧନାର ପଥରୁ ବିଚଳିତ ହେବା ଉଚିତ କି ?

ମୃତ୍ୟୁ—କିନ୍ତୁ ମନୁଷ୍ୟର ଦୈନନ୍ଦିନ ଜୀବନ ଯାହା ପାଇଁ ଅପରିହାର୍ଯ୍ୟ ଯାହା ତାହା ପରିହାର କରି ସାଧନା କଲେ ସାଧନା କଣ ସଫଳ ହୁଏ ? ସର୍ବୋତ୍କୃଷ୍ଟ ପ୍ରତିଭାବାନ ବ୍ୟକ୍ତି ଯଦି ଦୁଇ ବେଳା ଦୁଇଗୁଣ୍ଡା ଖାଇବାକୁ ହେଲେ ନ ପାଏ, ତେବେ ତାର ପ୍ରତିଭା ସୁଦ୍ଧା ସ୍ଫୁରିବ ନାହିଁ ।

ଧନଞ୍ଜୟ—ଠିକ କହୁଛ ମୃତ୍ୟୁ ! କିନ୍ତୁ ଏପରି ହୁଏ କାହିଁକି ? ମନୁଷ୍ୟ ସବୁ ସମର୍ପି ଦେଇ, ମନ ପ୍ରାଣ ଦେଇ ତାର ସାଧନାରେ ବ୍ରତୀ ହୋଇ ପାରୁଥିଲେ କି ଅଦ୍ଭୁତ କାର୍ଯ୍ୟ ସାଧିତ ହୋଇ ପାରନ୍ତା । କିନ୍ତୁ କବିତାର ସହିତ ଅନଟନ୍ତା ରହି ପ୍ରତିଭାକୁ ମ୍ଳାନମୟ କରି ପକାଏ । କହିଁକି ?

ମୃତ୍ୟୁ—ଏହାହିଁ ପ୍ରକୃତିର ନିୟମ କବି ?

ଧନଞ୍ଜୟ—ପ୍ରକୃତିର ନିୟମ ? ଯେଉଁ ପ୍ରକୃତିର ନିୟମରେ ପ୍ରଭାତ ସୂର୍ଯ୍ୟର ଅରୁଣ କିରଣରେ ପଦ୍ମ ବିକଶିତ ହୁଏ, ଯେଉଁ ପ୍ରକୃତିର ନିୟମରେ ଚନ୍ଦ୍ରର ଆକର୍ଷଣରେ ସମୁଦ୍ର ଉଚ୍ଛ୍ୱସିତ ହୁଏ, ସେହି ପ୍ରକୃତିର ନିୟମରେ କବିର ବିଚିତ୍ର କଳ୍ପନାଧାରା ବୁଭୁକ୍ଷାଦ୍ୱାରା ପ୍ରତିହତ ହୁଏ ?

ମୃତ୍ୟୁ—ହଁ, ସେହି ପ୍ରକୃତିର ନିୟମରେହିଁ ହୁଏ କ୍ଷୁଧା, ତୃଷା, ନିଦ୍ରା, ମାନବର ଦୈନନ୍ଦିନ ପ୍ରବୃତ୍ତି । ଏହାହିଁ ଜୀବନର ଲକ୍ଷଣ । ଏହାହିଁ ଜୀବନ୍ତର ଲକ୍ଷଣ ।

କିନ୍ତୁ କବି ପାଇଁ ମଧ୍ୟ ଯେ ଦୁଇବେଳା ଅନ୍ନ ସଂସ୍ଥାନର ବ୍ୟବସ୍ଥା ଦରକାର, ଏଥିରେ ତୁମର କ'ଣ ଆପତ୍ତି ଥାଇପାରେ ମୁଁ ବୁଝୁ ନାହିଁ। ତେଲ ଲୁଣର ଦୁନିଆ ପ୍ରତି ତୁମର ଘୃଣା କାହିଁକି ମୁଁ ବୁଝୁ ନାହିଁ। ଗୋଲାପ ବଗିଚା ପାଖରେ କଦଳୀ ବଗିଚା ରହିଲେ ତୁମର ଆପତ୍ତି କଣ ଅଛି ?

ଧନଞ୍ଜୟ—ନା, ନା ମୁଁ କଣ ସେ କଥା କହୁଛି ? ମୁଁ କହୁଛି, ଏଇ ତେଲ ଲୁଣର ଦୁନିଆକୁ ନେଇ ଯିନା ଦୁନିଆର ଶ୍ରେଣୀ ବିଭାଗ ସୃଷ୍ଟି। ଅଭିଜାତ, ନୀଚ, ଧନୀ, ଦରିଦ୍ର, ସମ୍ମାନିତ, ଅସମ୍ମାନିତ ଏତେ ଶ୍ରେଣୀ କଣ ଟଙ୍କା ଅଣା ପାହୁଲର ହିସାବ ନେଇ ହୁଏ ନାହିଁ ? ଆଉ ଆମେ ଯେତେବେଳେ ମନୁଷ୍ୟକୁ ଟଙ୍କା ଅଣା ପାହିର ମାପକାଠିରେ ମାପିବାକୁ ଆରମ୍ଭ କରୁଁ, ସେତେବେଳେ ମନୁଷ୍ୟର ମନୁଷ୍ୟତ୍ୱ କେତେ ହୀନ ଜଣାପଡ଼େ !

ମୁଁ ଯଦି ଆଜି ମାସିକ ଶହେ ଟଙ୍କା ବେତନରେ ଚାକିରି କରୁଥାନ୍ତି, ତେବେ ଯେଉଁମାନେ ମାସିକ ତିନି ଶହ ଟଙ୍କା ପାଉଛନ୍ତି, ସେମାନଙ୍କଠାରୁ ତଳ ଶ୍ରେଣୀରେ ଥାଆନ୍ତି। ଏ ସବୁକୁ ମୁଁ ଘୃଣା କରେ।

ମୃତ୍ୟୁ—କିନ୍ତୁ ଏକଥା କଣ ସତ ନୁହେଁ ଯେ ତୁମେ ତୁମର ବଡ଼ ଭାଇଙ୍କର ଗଳଗ୍ରହ ଥିଲ ? ବେକାର ଓ ଅଳସୁଆ ବୋଲି ତୁମକୁ ତୁମର ଭାଇ ଭାଉଜ ଘୃଣା କରନ୍ତି।

ଧନଞ୍ଜୟ—ଅତି କଠୋର ସତ୍ୟ କଥା କହୁଛ, ମୃତ୍ୟୁ । ମୁଁ ଯଦି ଜାଣିଥାନ୍ତି ଯେ ମାସିକ ଶହେ ଟଙ୍କା ଚାଉଥିବା ଚାକିରିଆ-ଠାରୁ ବେକାର କବିର ସାମାଜିକ ସ୍ତର ବହୁ ନିମ୍ନରେ, ତେବେ ମୁଁ କବିର ସାଧନା ଛାଡ଼ି ଚାକିରି କରିଥାନ୍ତି । ସରସ୍ୱତୀଙ୍କ ଆରାଧନା ଛାଡ଼ି ଲକ୍ଷ୍ମୀ ଦେବୀଙ୍କର ସେବା କରିଥାନ୍ତି । କିନ୍ତୁ ମୋର ଆଦର୍ଶର ନିଦ୍ରା ଭାଙ୍ଗିବାକୁ ବହୁତ ବିଳମ୍ବ ହେଲା ।

ତୁମେ ଜାଣ, ଘର ଭଉଜ ମୋର ଅକର୍ମଣ୍ୟତା ଯୋଗୁଁ ବିରକ୍ତ ହେଉଥିଲେ ବୋଲି କେତେ ଥର ମୁଁ ବନ୍ଧୁ-ମାନଙ୍କଠାରୁ ଧାର କରି ନିଜର ପକେଟ ଖର୍ଚ୍ଚ ଚଳାଇଛି । ଯେଉଁ ବନ୍ଧୁମାନଙ୍କଠାରୁ ଯେତେ ଧାର ନେଇଛି, ଧାର ଦେଲବେଳେ ସେମାନେ ସ୍ପଷ୍ଟ ଅନୁଭବ କରିଛନ୍ତି ଓ ମୋତେ ବୁଝାଇ ଦେବାକୁ ଚେଷ୍ଟା କରିଛନ୍ତି ଯେ ଧାର ଶୁଝିବାର ଶକ୍ତି ମୋର ନାହିଁ । ତଥାପି ମୁଁ ମାଗିଛି । ଭିକ୍ଷା ନୈବ ଚ ନୈବ ଚ ଜାଣି ସୁଦ୍ଧା ମୁଁ ଧାର ମାଗିଛି । ସେଥିପାଇଁ ମୁଁ ଆଜି ବନ୍ଧୁଶୂନ୍ୟ, ସମ୍ବଳଶୂନ୍ୟ । ନିର୍ଲଜ୍ଜ ପ୍ରବୃତ୍ତିର ଏହା ହିଁ ବୋଧହୁଏ ଶେଷ ପରିଣତି ।

ମୃତ୍ୟୁ – କିନ୍ତୁ ଏବେ ସେଥିପାଇଁ ଦୁଃଖ କରି ଲାଭ କଣ ? ତୁମେ ଇଚ୍ଛା କରିଥିଲେ ନିଜକୁ ସୁଖୀ କରି ପାରିଥାନ୍ତ । ନିଜକୁ ଦୁଃଖୀ କରି ହୁଏତ ତୁମେ ଜଗତକୁ ସୁଖ ଦେବାକୁ ଚାହୁଁଥିଲ । କିନ୍ତୁ ତୁମେ କଣ କେବେ ସୁଖୀ ହୋଇ ପାରି

ନାହିଁ ? ନିଜର ମନରେ ଆନନ୍ଦ ଅନୁଭବ ନ କରି ତୁମେ
କପରି ଅନ୍ୟକୁ ଆନନ୍ଦ ପରିବେଷଣ କରିବାକୁ ଚାହୁଁଥିଲ ?

ଧନଞ୍ଜୟ—ହଁ, ହଁ ଦୁଃଖ ଭିତରେ କଣ ସୁଖ ନାହିଁ ? କହୁଛି ମୁଁ ମୋର ଆନନ୍ଦର କଥା, ମୋର ପ୍ରେମର କଥା, ମୋର ସ୍ୱର୍ଣ୍ଣମୟ ଦିନଗୁଡ଼ିକର କଥା । କିନ୍ତୁ ତାହା ପୂର୍ବରୁ ମୋ ପାଇଁ ଗୋଟିଏ କାମ କର ।

ଏଇ ଖଟ ତଳେ ଯେଉଁ ବାକ୍ସ ଅଛି, ସେଥିରେ ଅଛି ଗୋଟିଏ ଗ୍ରୁପ ଫଟୋ । ମୋହର ହାତରେ ନିଆ ଯାଇଥିବା ଫଟୋ । ତୁମକୁ ଆଜି ସେହି ଫଟୋ ଦେଖାଇବାକୁ ଓ ଏ ଜଗତରୁ ବିଦାୟ ନେବାର ଶେଷ ମୁହୂର୍ତ୍ତରେ ଆଖି ଭରି ସେ ଫଟୋ ଦେଖିବାକୁ ମୋର ମନ ହେଉଛି । ମୋର ଏ ଶେଷ ଇଚ୍ଛା ପୂରଣ କରିବ ନାହିଁ ?

ମୃତ୍ୟୁ—କାହାର ଫଟୋ ସେଇଟା ?

ଧନଞ୍ଜୟ—ସେ ଫଟୋରେ ଅଛି ମୋର ମାନସୀ ପ୍ରିୟା ଅରୁଣାର ଛବି । ଆଜିକି ପ୍ରାୟ ଦଶ ବର୍ଷ ତଳର କଥା । ମୋର କଲେଜ ପଢ଼ା ସେତେବେଳେ ଶେଷ ହୋଇ ନ ଥାଏ । ପୁରୀ ସମୁଦ୍ର କୂଳରେ ଦିନେ ଗ୍ରୀଷ୍ମ ପ୍ରଭାତର କୋମଳ ସୂର୍ଯ୍ୟ କିରଣରେ ବସି ମୁଁ ଦେଖୁଥାଏ ସମୁଦ୍ରର ନୃତ୍ୟ । ଲହରୀ ପରେ ଲହରୀ ଆସି ନିଷ୍ଠୁର ଆଘାତ କରୁଥାଏ ବେଳାଭୂମିକୁ । ସେହି ସମୟରେ ଦେଖିଲି ଜଣେ ସଦ୍ୟସ୍ନାତା, ଆଲୁଳାୟିତକେଶା, ସିକ୍ତବସନା ତରୁଣୀ ସମୁଦ୍ରରୁ ସ୍ନାନ କରି ଫେରୁଛି । କି ସୁନ୍ଦର ଥିଲା ତାର

ରୂପ ! କି ମାଦକ ତାର ଚାହାଣୀ ! କି ମନୋରମ ତାର ଗତି ! ରବୀନ୍ଦ୍ରନାଥଙ୍କର 'ଉର୍ବଶୀ' କବିତା ପଢ଼ିଛ ତୁମେ ? ମୋହର ହୃଦୟର ବାସନାର ବିକଶିତ ଅରବିନ୍ଦରେ ପାଦ-ପଦ୍ମ ପକାଇ ଚାଲିଗଲା ସେଇ ତରୁଣୀ । ସେହି ସମୟରୁ ତାକୁ ଭଲ ପାଇବାକୁ ଲାଗିଲି । ସେହି ସମୟରୁ ମୋର କବିତାର ରୂପ ବଦଳିଗଲା । ମୋର ଛନ୍ଦରେ ଦେଖାଗଲା ଏକ ନୂତନ ଉନ୍ମାଦନା । ମୁଁ ସମୁଦ୍ରର ସୌନ୍ଦର୍ଯ୍ୟ ଭୁଲିଗଲି, ପ୍ରକୃତିର ମାଧୁର୍ଯ୍ୟ ଭୁଲିଗଲି । ତାହାର ପାଇଁ ମୋର ଲେଖନୀକୁ ଉତ୍ସର୍ଗିତ କଲି ।

ମୃତ୍ୟୁ—( ହସି ହସି ) ବାଃ ବାଃ କି ଚମତ୍କାର । ଚୁଇ ତଟର ମିଳନରୁ ଦୁଇ ହୃଦୟ ମିଳନ ? ଏ ତ କବିତା ନୁହେଁ, ଏହା ଯେ ଏକ ଉପନ୍ୟାସ ।

ଧନଞ୍ଜୟ—ଶୁଣ । ସେହି ସମୟରୁ ମୋର ସବୁବେଳେ ଇଚ୍ଛା ହେଲା କିପରି ତା ସାଙ୍ଗରେ ଏକାନ୍ତରେ ଦେଖା ହେବ । କିପରି ତାକୁ ମୋର ପ୍ରେମ କବିତା ପଢ଼ି ଶୁଣାଇବି । କିପରି ତାର ଅପୂର୍ବ ରୂପର ଏକ ପ୍ରତିକୃତି ମୋର ଘର ସାଥୀ କରି ରଖିବି ।

ମୃତ୍ୟୁ—ସେ ସୁଯୋଗ ମିଳିଥିଲା ତୁମକୁ ?

ଧନଞ୍ଜୟ—ହଁ ଧନ୍ୟ ମୋର ଭାଗ୍ୟ । ଅଳ୍ପ କେତେ ଦିନ ପରେ ମୁଁ ଲାଇଟହାଉସ ପାଖରେ ସମୁଦ୍ର କୂଳରେ ବୁଲୁଥିଲି ଗୋଟିଏ କେମେରା ଧରି ଅପରାହ୍ଣ ସମୟରେ । ତାକୁ ସେହିପରି ସମୁଦ୍ରରୁ ସ୍ନାନ କରି ଫେରୁଥିବାର ଦେଖିଲି । ସେ ଥିଲା

ଏକାକିନୀ । ମୁଁ ସାହସ ସଞ୍ଚୟ କରି ତାକୁ ପଚାରିଲି, "ଆପଣଙ୍କର ଫଟୋ ଉଠାଇ ପାରେ କି ?" ମୁଁ ଆଶଙ୍କା କରୁଥିଲି, ଭଦ୍ର ତିରସ୍କାର ନିଷ୍ଠୁର ଅପମାନକୁ ସୁଦ୍ଧା ସହି ନେବାର ମାନସିକ ଅବସ୍ଥା ଥିଲା ମୋର ସେତେବେଳେ । କିନ୍ତୁ ସେ ମୋତେ ଅପମାନ ଦେବା ବଦଳରେ ମୋ ଆଡ଼କୁ ଚାହିଁ ହସି କହିଥିଲା, "ଆପଣ କଣ ପେଶାଦାର ଫଟୋଗ୍ରାଫର୍ ?" ମୁଁ କହିଲି, "ମୁଁ ଜଣେ କବି ।" "କେମେରାଧାରୀ କବି ? କେମେରା ଓ କଲମ ଉଭୟରେ ସିଦ୍ଧହସ୍ତ ? ଆଚ୍ଛା ଫଟୋ ଉଠାନ୍ତୁ ।" ମୁଁ ଫଟୋ ଉଠାଇ ତାକୁ ଧନ୍ୟବାଦ ଦେଲି । ସେ କହିଲା, "ମୋର ନାମ ବି ନୋଟ୍ କରି ନିଅନ୍ତୁ ମୋର ନାମ 'ଅରୁଣା' । ଆଜି ଆପଣଙ୍କର କବିତା ତ ଶୁଣାଇଲେ ନାହିଁ ?" ମୁଁ କହି-ଥିଲି, "ଶୁଣିବେ ? ସତେ ?" ତାପରେ ମୋର ବହୁଦିନର ସଞ୍ଚିତ ଆଶା ପୂର୍ଣ୍ଣ ହେଲା । ତାକୁ ମୋର ସର୍ବଶ୍ରେଷ୍ଠ ପ୍ରେମ କବିତା ପଢ଼ି ଶୁଣାଇଥିଲି । ତାର ମୁହଁ ହର୍ଷୋତ୍‌ଫୁଲ୍ଲ ହୋଇ ଉଠିଲା । ମୋର କବିତାକୁ ତାଠାରୁ ଅଧିକ ଆଗ୍ରହ ସହକାରେ ଆଉ କେହି ବୋଧହୁଏ ଶୁଣି ନାହିଁ । ତା-ଠାରୁ ଅଧିକ କେହି ପସନ୍ଦ ମଧ୍ୟ କରିନାହିଁ । ସେ ଦିନରୁ ଆଉ ତା ସାଙ୍ଗରେ ଦେଖା ହୋଇ ନାହିଁ ।

ମୃତ୍ୟୁ – ବେଶ୍ ନାଟକୀୟ କଥା ତ । ( ଟିକିଏ ମନେପକାଇ ) ଓଃ ଅରୁଣା ! ବେଶ୍ ମନେ ପଡ଼ୁଛି ମୋର । ଆଚ୍ଛା, ତାର

ଫଟୋ ଦେଖିବାଠାରୁ ତାକୁ ସ୍ୱଶରୀରେ ଦେଖିବାକୁ ଚାହଁ କି ?

ଧନଞ୍ଜୟ—ନା, ନା, ଫଟୋ ଦେଖିବା ହିଁ ଯଥେଷ୍ଟ ହେବ । ଆଚ୍ଛା, ଅରୁଣାକୁ ତୁମେ ଜାଣିଲ କପରି ? ସେ କି ଏବେ ତୁମର କବଳରେ··· (ଅଟକି ଯାଇ ) ଓଃ ମୁଁ ଅତିଶୟ ଦୁଃଖିତ । ତୁମକୁ କଡ଼ା କଥା···

ମୃତ୍ୟୁ—( କଥାରେ ବାଧା ଦେଇ ) ନା, ନା ଅରୁଣା ମରି ନାହିଁ । ସେ ଏବେ ବି ଜୀବିତ । ଏବେ ସେ ତାର ସ୍ୱାମୀ ଘରେ ତାର ତିନି ମାସର ତୃତୀୟ ପୁଅକୁ ସାଙ୍ଗରେ ଧରି ଶୋଇଛି । ତୁମେ ତାକୁ ଦେଖିବାକୁ ଚାହଁ କି ?

ଧନଞ୍ଜୟ—ଶୋଇଛି ? ଆହା ବେଚାରି ଶୋଇଛି ? ଶୋଇଥାଉ । ମୋର ଦୁଃଖରେ ତାକୁ ଦୁଃଖୀ କରିବାକୁ ମୁଁ ଚାହେଁ ନାହିଁ ଏବେ । ମୋର ଏତେ କଷ୍ଟ, ଏ ସଂସାରରୁ ବିଦାୟ ନେବା କଥା ସେ ଜାଣିଲେ ତାର ମନରେ କଷ୍ଟ ହେବ । କିନ୍ତୁ ତାକୁ ହିଁ ନେଇ ମୋର ସବୁ କବିତା । ସେ ମୋର କବିତାର କବିତା ।

ମୃତ୍ୟୁ—ଆଚ୍ଛା, ତୁମେ ଯଦି ତାକୁ ଏତେ ଭଲ ପାଅ, ତୁମେ ତାକୁ ବାହା ହୋଇ ପାରିଲ ନାହିଁ ? ଅରୁଣାକୁ ତୁମେ ବାହା ହୋଇଥିଲେ, କି ଆନନ୍ଦରେ କଟିଥାନ୍ତା ଏବେ ତୁମର ଜୀବନ । ହୁଏତ ଦୁଇ ତିନୋଟି ପିଲାପିଲିଙ୍କ ନେଇ କି ଆନନ୍ଦରେ ଥାଆନ୍ତ ସ୍ୱାମୀ ସ୍ତ୍ରୀ ରୂପେ ।

ଧନଞ୍ଜୟ—( ହସି ହସି ) ସ୍ୱାମୀ ସ୍ତ୍ରୀ ରୂପେ ? ମୁଁ ହୋଇଥାନ୍ତି ଅରୁଣାର ସ୍ୱାମୀ ? ହୃଦୟର ଈଶ୍ୱର ? ପତି ? ପରମ ଗୁରୁ ? ଆଉ ସେ ହୋଇଥାନ୍ତା ମୋର ସ୍ତ୍ରୀ ? ଧର୍ମପତ୍ନୀ ? ବାଃ ( ପରିହାସ କରି ) ନା, ନା, ମୁକ୍ତି ତୁମେ ଧର୍ମ-ଦେବତା । ତୁମେ ପ୍ରେମର ଅର୍ଥ ବୁଝି ପାରିବ ନାହିଁ । ମୁଁ ବୁଝାଇ ପାରିବ ନାହିଁ ତୁମକୁ ବିଶୁଦ୍ଧ ଦେହାତୀତ ପ୍ରେମ ।

ବିବାହକୁ ମୁଁ ମନେ କରେ ତେଲ ଲୁଣରେ ମାଳିସ କରା ପ୍ରେମ । ଅରୁଣାକୁ ମୋର ପାଖରେ ଶୋଇ ଢୁଙ୍କୁଡ଼ି ମାରୁଥିବାର ଦେଖିଥିଲେ, ମୁଁ ପ୍ରିୟତମାର ଢୁଙ୍କୁଡ଼ି ବିଷୟରେ କବିତା ଲେଖିଥାନ୍ତି ନା । ପାଗଳ ହୋଇଥାନ୍ତି ମୁଁ ଭାବି ପାରୁନାହିଁ । ମୋର ସ୍ତ୍ରୀ ହେଲ ପରେ ଯଦି ତାକୁ ମେଲେରିଆ ଜ୍ୱରରେ କମ୍ପୁଥିବାର ଦେଖିଥାନ୍ତି ତେବେ ମୋର ପ୍ରେମକୁ ମଧ୍ୟ ବୋଧହୁଏ ମେଲେରିଆ ଜ୍ୱର ଧରିଥାନ୍ତା ।

ତୁମେ ହସୁଛ ମୁକ୍ତି ? ଏ ସବୁ କଥା ତୁମେ ବୁଝି ପାରିବ ନାହିଁ । ପ୍ରେମ ଗୋଟିଏ ଅଲଗା ଜିନିଷ । ଦେହ ଓ ଦେହାତୀତ—ଉଭୟକୁ ବ୍ୟାପି ମୋର ପ୍ରେମ । ସେଇ ପ୍ରେମ ବାର୍ଦ୍ଧକ୍ୟକୁ ଏଡ଼ାଇଦିଏ । ମୃତ୍ୟୁକୁ ଜୟ କରେ ।

ମୁକ୍ତି—( ହସି ହସି ) କିଛି ମନେ କରିବ ନାହିଁ କବି । ତୁମର ଏ ଅବସ୍ଥାରେ ତୁମକୁ ପରିହାସ କରିବାର ମୋର ଇଚ୍ଛା ନୁହେଁ । ଖାଲି ଗୋଟିଏ ଗୁରୁତର ପ୍ରଶ୍ନ ପଚାରିବାକୁ ଚାହେଁ ମୁଁ ତୁମକୁ ।

ଧନଞ୍ଜୟ—ପରୃର ।

ମୃତ୍ୟୁ—ଆଚ୍ଛା, ପ୍ରେମ ଓ ବ୍ୟଭିଚାର, ପ୍ରେମ ଓ କାମୁକତା ମଧ୍ୟରେ ପାର୍ଥକ୍ୟ କଣ ?

ଧନଞ୍ଜୟ—ଓଃ, ଏଇ କଥା ? ଏତ ସେ ଗୋଟାଏ ଚିରନ୍ତନ ପ୍ରଶ୍ନ । ଯାହା ହୃଦୟର ବାହାରେ ତାହା ପ୍ରେମ, ଯାହା ଦୈହିକ ତାହା କାମୁକତା ବା ବ୍ୟଭିଚାର ।

ମୃତ୍ୟୁ—ତୁମେ ମୋର ପ୍ରଶ୍ନ ବୁଝି ପାରିଲ ନାହିଁ । ମୋର ପ୍ରଶ୍ନ ଏତେ ସହଜ ନୁହେଁ । ତେବେ ଥାଉ ସେ କଥା । ତୁମର ବାକ୍‌ସରେ ଥିବା ଅରୁଣାର ଫଟୋ ଦେଖିବାକୁ ଚାହୁଁଥିଲ ପରା ? ମୋତେ ଦେଖାଇବାକୁ ଚାହୁଁଥିଲ ପରା ? ମୁଁ ଏଇଠୁ ଖୁବ୍ ଭଲ ଭାବରେ ଦେଖି ପାରୁଛି ସେ ଫଟୋଟି । ଆଦ୍ର ସ୍ବଚ୍ଛ ବସନ ଭେଦ କରି ଫୁଟି ଉଠୁଛି ତାର ଯୌବନର ଗରିମା । ଲଜ୍ଜାରେ ନଇଁ ପଡ଼ୁଛି ଅରୁଣାର ଆଖିପତା । ଫଟୋଟି ବାକ୍‌ସରୁ କାଢ଼ି ମୁଁ ତୁମକୁ ଦେବି । କିନ୍ତୁ ଫଟୋ ଦେଖିସାରିଲା ପରେ ତାକୁ ଚିକି ଚିକି କରି ଚିରି ଝରକା ବାଟେ ତାହା ଗଳାଇ ଦେବାକୁ ପଡ଼ିବ ତୁମକୁ ।

ଧନଞ୍ଜୟ—କଣ କହୁଛ ତୁମେ, ମୃତ୍ୟୁ ? ମୋର ଏତେ ଆଦରର ଛବିକୁ, ମୋର ମାନସୀ ପ୍ରିୟାର ଛବିକୁ ମୁଁ ନିଜ ହାତରେ ଚିରି ଦେବି ?

ମୃତ୍ୟୁ—ହଁ । ସେଇ ସର୍ତ୍ତରେ ମୁଁ ବାକ୍‌ସରୁ ଅରୁଣାର ଛବି କାଢ଼ି ତୁମକୁ ଦେଇ ପାରେ ।

ଧନଞ୍ଜୟ—ଓଃ, କି ନିଷ୍ଠୁର ତୁମେ ମୃତ୍ୟୁ ! ମୁଁ ଭାବଥିଲି, ବେଦନାମୟ ପ୍ରାଣରେ ତୁମେ ହିଁ ଶାନ୍ତି ଆଣିଦିଅ । ସବୁ ଯାତନା, ସବୁ ଯନ୍ତ୍ରଣାର ଉପଶମ ତୁମଠାରେ । କିନ୍ତୁ ମନୁଷ୍ୟର ଯନ୍ତ୍ରଣାକୁ ତୁମେ ବହୁ ଗୁଣରେ ବଢ଼ାଇ ଦେଇ ପାର ମଧ୍ୟ ।

କିଛି ମନେ କରିବ ନାହିଁ, ମୃତ୍ୟୁ । ତୁମକୁ ଅପମାନ ଦେବା ମୋର ଉଦ୍ଦେଶ୍ୟ ନୁହେଁ ।

ମୃତ୍ୟୁ—ମୁଁ କିଛି ମନେ କରୁ ନାହିଁ । ତୁମର ମନର ଭାବ ମୁଁ ଭଲ ଭାବରେ ବୁଝୁଛି ।

କିନ୍ତୁ ଗୋଟିଏ କଥା ତୁମକୁ କହିଦିଏଁ । କାଲି ସକାଳେ ତୁମେ ଆଉ ଇହ ଜଗତରେ ନ ଥିବ । ତୁମର କେହି ବନ୍ଧୁ ବାନ୍ଧବ ବା ଜ୍ଞାତି କୁଟୁମ୍ବ କେହି ନାହାନ୍ତି ଏଠାରେ । ତୁମର ବାକ୍ସ ସରକାରୀ ସମ୍ପତ୍ତି ବୋଲି ପରିଗଣିତ ହେବ । କଣ ବା ସମ୍ପତ୍ତି ପାଇବେ ତୁମର ଭାଙ୍ଗ ଏ ବାକ୍ସରୁ । ତୁମେ ଯେଉଁ ଅରୁଣାକୁ ଏବେ ସୁଦ୍ଧା ଏତେ ଭଲ ପାଅ, ସେହି ଅରୁଣାର ସ୍ୱାମୀ ଏଠାରେ ବଡ଼ ସରକାରୀ ଅଫିସର । ସେ ଯଦି କାଲି ଏଠାକୁ ଆସି ତୁମର ବାକ୍ସ ଖୋଲନ୍ତି ଓ ଅରୁଣାର ସଦ୍ୟସ୍ନାତା ଛବି ଦେଖନ୍ତି, ତେବେ ଅରୁଣାର ଅବସ୍ଥା କଣ ହେବ ଟିକିଏ ଭାବି ଦେଖ । ଅରୁଣାର ସ୍ୱାମୀର ମାନସିକ ଅବସ୍ଥା କଣ ହେବ ଟିକିଏ ଭାବି ଦେଖ ।

ଧନଞ୍ଜୟ—ଓଃ କି ଭୟାନକ ପରିଣତି । ମୃତ୍ୟୁ, ଚଞ୍ଚଳ ବାକ୍ସଟି ଖୋଲି ମୋତେ ଦିଅ । ମୁଁ ଏବେ ତାକୁ ଠିକ୍ ଠିକ୍ କରି

ତାର ଫିଙ୍ଗି ଦିଏ। ମୋ ପାଇଁ ଜଣେ ପବିତ୍ରା ନାରୀର ନାମରେ କଳଙ୍କ ଲଗିବ, ଏ କଥା ସହ୍ୟ କରିବାକୁ ମୁଁ ଚାହେଁ ନାହିଁ।

...କାହିଁ ? ଚୁପ୍ ହୋଇ ରହିଲ ଯେ। ଚଞ୍ଚଳ କର। ଆଉ ସମୟ ନାହିଁ।

ମୃତ୍ୟୁ—ପ୍ରକୃତରେ ଆଉ ସମୟ ନାହିଁ। ମୁଁ ବାକ୍ସ ଖୋଲିଲେ ବି ତୁମେ ଆଉ ଫଟୋ ଦେଖି ପାରିବ ନାହିଁ, ତାକୁ ଚିରି ପାରିବ ନାହିଁ। ଥାଉ ସେ କଥା। ଏବେ ମୋତେ କହ—ତୁମେ ଅରୁଣାର ଫଟୋକୁ ଆଗରୁ ନଷ୍ଟ ନ କଲ କାହିଁକି ?

ଧନଞ୍ଜୟ—ତିମାର ପ୍ରେମ ଯୋଗୁଁ।

ମୃତ୍ୟୁ—[ହସି] ପ୍ରେମ ? ପୁଣି ସେଇ ପ୍ରେମର ଛଳନା ? ଯଦି ତୁମେ ପ୍ରକୃତରେ ଅରୁଣାକୁ ଏତେ ଭଲ ପାଅ, ତେବେ ତୁମ ବାକ୍ସରେ ଥିବା ଅରୁଣାର ଫଟୋ ତାର ପତିହାତରେ ପଡ଼ିବାକୁ ଏତେ ଡରୁଛ କାହିଁକି ? ତୁମେ ବଡ଼ ଭୀରୁ, ଧନଞ୍ଜୟ। ତୁମେ ବଡ଼ ସ୍ୱାର୍ଥପର। ନିଜର ତଥାକଥିତ ପ୍ରେମର ମର୍ଯ୍ୟାଦା ରକ୍ଷା କରିବା ପାଇଁ ଜଣେ ସୁନ୍ଦରୀ ଚରିତ୍ରବତୀ ନାରୀର ଲଲାଟରେ କଳଙ୍କର ଟିକା ଲଗାଇ ଦେଉଛ।

ଅରୁଣାର ତିନୋଟି ପୁଅ। ସେମାନେ ବଡ଼ ହେଲେ ସମ୍ଭ୍ରାନ୍ତ ଲଭ କରିବେ। ସେମାନେ ଯଦି ଜାଣନ୍ତି ସେମାନଙ୍କର ଜନନୀ ଜଣେ କବିର ପ୍ରଣୟିନୀ—ଦେହାତୀତ ପ୍ରଣୟିନୀ—ହେବାର ସୌଭାଗ୍ୟ ଲଭ......

ଧନଞ୍ଜୟ—[ବାଧାଦେଇ] ଓଃ, ଥାଅ ସେତିକିରେ ମୃତ୍ୟୁ । ତୃପ୍ତ ବୈତରଣୀ ଆଜ କେତେ ଦୂର ?

...କେଡ଼େ ନିର୍ଦ୍ଦୟ ତୁମେ ମୃତ୍ୟୁ, କେତେ ନିଷ୍ଠୁର ତୁମେ । ମୋର ଜୀବନ ବ୍ୟର୍ଥ ହୋଇଛି । ମୋର ପ୍ରେମ ମଧ୍ୟ ବ୍ୟର୍ଥ ହୋଇଛି । ମୁଁ ଚାହୁଁଥିଲି ଏ ଦୁନିଆରେ ଅମର ହେବାକୁ, ସମସ୍ତଙ୍କ ହୃଦୟରେ ଚିର ଜୀବିତ ରହିବାକୁ । ମୁଁ ଏବେ ଚାହୁଁଛି, ମୋତେ ସମସ୍ତେ ଭୁଲିଯାନ୍ତୁ । ମୋତେ ନିଅ ମୃତ୍ୟୁ ସାଙ୍ଗରେ ବସୁନ୍ଧରା ଅତଳ ଗର୍ଭକୁ ।

ମୃତ୍ୟୁ—ପିବ ? ଚାଲ । ଉଠ ।

ଧନଞ୍ଜୟ—କିନ୍ତୁ ମୋର ଯେ ଉଠିବାର ସୁଦ୍ଧା ଶକ୍ତି ନାହିଁ । ମୁଁ ବଡ଼ ଦୁର୍ବଳ ହୋଇ ପଡ଼ିଛି ।

ମୃତ୍ୟୁ—ନା, ନା । ତୁମର ସବୁ ଦୁର୍ବଳତା ତୁମର ଜୀବନର ସହିତ ଶେଷ ହୋଇଯାଇଛି । ମୃତ୍ୟୁ ଏକ ନୂତନ ଶକ୍ତି ।

ଉଠ, ନିଜେ ଚେଷ୍ଟା କରି ଉଠ ।

ହଁ ବେଶ୍ । ତୁମେ ଠିକ୍ ଚାଲି ପାରିବ ମୋ ସାଙ୍ଗରେ ।

ଆସ ମୋର ପଛେ ପଛେ ।

[ କବି ଧନଞ୍ଜୟ ଅନନ୍ତ କ୍ଲେଶରେ ଶଯ୍ୟାରୁ ଉଠି ଧୀରେ ଧୀରେ ମନ୍ତ୍ରମୁଗ୍ଧ ପରି ମୃତ୍ୟୁର ଅନୁଗମନ କରି ରଙ୍ଗ-ମଞ୍ଚରୁ ନିଷ୍କ୍ରାନ୍ତ ହେଲେ ।

ରଙ୍ଗମଞ୍ଚ ଅନ୍ଧକାର ହେଲା ।

ପୁଣି ଯେତେବେଳେ ରଙ୍ଗମଞ୍ଚ ଆଲୋକିତ ହେଲ, ଧନଞ୍ଜୟ ପୂର୍ବପର ଶେଯରେ ଶୋଇଥିବାର ଦେଖାଗଲ ।]

[ନର୍ସର ପ୍ରବେଶ) ନର୍ସ ରୋଗୀର ନାଡ଼ୀ ଦେଖି,କପାଳରେ ହାତ ଦେଇ, ଆଖିପତା ଖୋଲି, କହିଲେ 'ସବୁ ଶେଷ ।' କମ୍ବଳଟରେ ମୃତ ଦେହର ମୁଣ୍ଡ ପର୍ଯ୍ୟନ୍ତ ଆବୃତ କରି ରଙ୍ଗମଞ୍ଚରୁ ନିଷ୍କ୍ରାନ୍ତ ହେଲେ ]

—ଯବନିକା—



# ଚନ୍ଦ୍ରଲୋକରେ ଆଧୁନିକ ସଭ୍ୟତା

[ ଚନ୍ଦ୍ରଲୋକର ଜଳହୀନ ସଂକଟ ସାଗରର ବାଲୁକାହୀନ ବେଳାଭୂମି ।
ସମୟ ସୂର୍ଯ୍ୟୋଦୟ ।  ଗୃଢ଼ଆଢ଼େ ତୀବ୍ର ଆଲୋକ ସତ୍ତ୍ୱେ କୃଷ୍ଣ
ପୃଷ୍ଠଭୂମିରେ ଉଜ୍ଜ୍ୱଳ ତାରକାମାନ ଦେଖାଯାଉଛନ୍ତି । ଦୁଇ
ଜଣ ଗୈରିକ ବସନଧାରୀ ଦୀର୍ଘଶ୍ମଶ୍ରୁ ସନ୍ନ୍ୟାସୀ ବେଦ
ପାଠ କରି ଉଷାଙ୍କର ସ୍ତୁତିଗାନ କରୁଛନ୍ତି:—]

ଯସ୍ୟା ରୁଶନ୍ତୋ ଅର୍ଚ୍ଚୟଃ ପ୍ରତି ଭଦ୍ରା ଅଦୃକ୍ଷତ
ସା ନୋ ରୟିଂ ବିଶ୍ୱବାରଂ ସୁପେଶସମୁଷା ଦଦାତୁ ସୁଗ୍ମ୍ୟମ୍ ।
ଯେ ଚିଦ୍ଧି ତ୍ୱାମୃଷୟଃ ପୂର୍ବ ଊତୟେ ଜୁହୂରେଽବସେ ମହି
ସା ନଃ ସ୍ତୋମାଁ ଅଭିଗୃଣୀହି ରାଧସୋଷଃ ଶୁକ୍ରେଣ ଶୋଚିଷା ।
ଉଷୋ ଯଦଦ୍ୟ ଭାନୁନା ବି ଦ୍ୱାରାବୃଣବୋ ଦିବଃ
ପ୍ର ନୋ ଯଚ୍ଛତା ଦବୃକଂ ପୃଥୁଚ୍ଛର୍ଦ୍ଦିଃ ପ୍ରଦେବି ଗୋମତୀରିଷଃ ।

ପ୍ରଥମ—ଅର୍ଯ୍ୟମା, ଉଷାର ବର୍ଣ୍ଣାଢ୍ୟତା ଏଠାରେ ଚନ୍ଦ୍ରଲୋକରେ
ନାହିଁ । ତେଣୁ ଏଠାରେ ଉଷାଙ୍କର ସ୍ତୁତିଗାନ ତୋଷାମଦ
ପରି ମନେ ହୁଏ ।

ଅର୍ଯ୍ୟମା—ହଁ, ସନାତନ; ପୃଥିବୀର ଉଷାର ଅରୁଣ ଆଲୋକ ହିଁ ସୁନ୍ଦର; ବାସ୍ତବିକ ବନ୍ଦନୀୟ । ଉଷାର ସମସ୍ତ ସମ୍ଭାର ଦେଇ ସ୍ତୁତ କରିବାର ଯୋଗ୍ୟ । ଏଠି ଗାଢ଼ ଅନ୍ଧକାର ଓ ତୀବ୍ର ସୂର୍ଯ୍ୟାଲୋକ ମଧ୍ୟରେ ଉଷା କ୍ଷଣକ ପାଇଁ ଦେଖା ଦେଇ ସଙ୍ଗେ ସଙ୍ଗେ ଅଦୃଶ୍ୟ ହୋଇଯାନ୍ତି ।

ସନାତନ—ଅର୍ଯ୍ୟମା, ଏଇ ପିତୃଲୋକରେ ସୌନ୍ଦର୍ଯ୍ୟର ଉପାସନା ଅସମ୍ଭବ । ପୃଥିବୀର ଲୋକେ ଆମର ଏଇ ଚନ୍ଦ୍ରଲୋକକୁ ସୌନ୍ଦର୍ଯ୍ୟର ଆଧାର ବୋଲି, ଅମୃତର ଉତ୍ସ ବୋଲି, ଶୀତଳ କିରଣର ଭଣ୍ଡାର ବୋଲି ପ୍ରଶଂସା କରିଥାନ୍ତି, ମାତ୍ର ଚନ୍ଦ୍ର ତୁଳନାରେ ପୃଥିବୀ କେତେ ସୁନ୍ଦର । ଯେଉଁ ଚନ୍ଦ୍ରକୁ ପୃଥିବୀର କବିମାନେ ରମଣୀର ରମଣୀୟ ମୁଖ-ମଣ୍ଡଳ ସହିତ ତୁଳନା କରନ୍ତି, ସେହି ଚନ୍ଦ୍ରକୁ ଯଦି ସେମାନେ କିଏ ପାଖରୁ ଦେଖନ୍ତେ, ତେବେ ବସନ୍ତ ଚିହ୍ନ ବିକ୍ଷତ ମୁଖ ସଙ୍ଗରେ ତୁଳନା କରନ୍ତେ, ଆଜ ସେମାନଙ୍କର କଳ୍ପନା ଏଇ ନିଷ୍ଠୁର ବେଳାଭୂମିରେ ଚୂର୍ଣ୍ଣ ହୁଅନ୍ତା ।

ଅର୍ଯ୍ୟମା—ଆମେ ଯେପରି ଏଇ ଚନ୍ଦ୍ରରୁ ପୃଥିବୀକୁ ସୁନ୍ଦର ଦେଖୁ-ଥାଉଁ, ସେହିପରି ପୃଥିବୀର ଲୋକେ ଦୂରରୁ ଆମର ଏଇ ଚନ୍ଦ୍ରକୁ ସୁନ୍ଦର ଦେଖୁଛନ୍ତି । କଥାରେ କହନ୍ତି—ଦୂର ପର୍ବତ ସୁନ୍ଦର ।

ସନାତନ—କିନ୍ତୁ ଅର୍ଯ୍ୟମା, ପିତୃଲୋକରୁ ପୁଣି ମାନବଲୋକକୁ ଫେରି ଯିବାକୁ ଇଚ୍ଛା ହୁଏ ମୋର । ମନେ ଅଛି ମୋର, ସେହି ମାନବ ଶରୀରର କଥା । ବ୍ରହ୍ମାବର୍ତ୍ତର ଋଷି

ଆଶ୍ରମରେ ଉଷାର ସ୍ୱର୍ଣ୍ଣାଭ ଅରୁଣ ଆଭା ମନକୁ ପ୍ଲାବିତ କରୁଥିଲା ବୋଲି ବୈଦିକ କବି ସ୍ତୁତି-ମୁଖର ହୋଇ ଏ ମନ୍ତ୍ର ରଚନା କରିଥିଲେ । ଦିନ-ବେଳରେ ସୁନୀଳ ଆକାଶ ଓ ରାତରେ ଉଜ୍ଜ୍ୱଳ ଚନ୍ଦ୍ରର କିରଣ ବା ତାରମୟ ନକ୍ଷେମଣ୍ଡଳ ଥିଲା—ଏଠାରେ ରହିଆଛି କଳା ଆକାଶ ଓ ସୂର୍ଯ୍ୟ ଆଉ ତାରଙ୍କର କିରଣ । ସେଠାରେ ଥିଲା ମଳୟ ସମୀରର ମୃଦୁ ସ୍ପର୍ଶ, ଏଠାରେ ଅଛି ପ୍ରଖର ସୂର୍ଯ୍ୟତାପ ବା ପ୍ରଚଣ୍ଡ ହିମସ୍ପର୍ଶ । ସେଠାରେ ଥିଲା ପ୍ରହର ଦିନ ମାସ ଋତୁମାନଙ୍କର ବିଚିତ୍ର ଶୋଭା-ଯାତ୍ରା—ଏଠାରେ ବୈଚିତ୍ର୍ୟହୀନ ଦିନ ଆଉ ରାତ । ସେଠାରେ ଥିଲା ରୂପ ରସ ଗନ୍ଧର ବୈଭବ, ଏଠାରେ ଅଛି ପିତୃଲୋକର କଠୋର ତପସ୍ୟା ।

ଅର୍ଯ୍ୟମା – ( ପରିହାସରେ ) ଆଜି ପୃଥିବୀର ବସନ୍ତ ଓ ମଳୟ ତୁମର ହୃଦୟରେ ଯୌବନର ଉଦ୍ଦୀପନା ସୃଷ୍ଟି କରିବ ବୋଲି ମନେ ହେଉଛି ।

ସନାତନ – ପୃଥିବୀରେ ସ୍ଥାବର ଜଙ୍ଗମ ପଶୁପକ୍ଷୀ ମାନବ ମାନବୀଙ୍କର ନାଟକୀୟ ଜୀବନଯାତ୍ରା, ସ୍ନେହ ଓ ଘୃଣା, କର୍ତ୍ତବ୍ୟ ଓ ଆନନ୍ଦ, ଦୟା ଓ ନିଷ୍ଠୁରତା, ଶାନ୍ତି ଓ କ୍ରୋଧରେ ତରଳ-ତରଙ୍ଗିତ ଜୀବନ; ପ୍ରଭାତରେ ଆଶ୍ରମର ବେଦଧ୍ୱନି, ମଧ୍ୟାହ୍ନରେ କଳାକାରର ସଙ୍ଗୀତ ମୂର୍ଚ୍ଛନା, ସନ୍ଧ୍ୟାରେ ପକ୍ଷୀର କଳକାକଳି—ସେସବୁ ଏଠାରେ ମିଳିବା ଅସମ୍ଭବ ।

ତେଣୁ ଅନେକ ସମୟରେ ମନେ ହୁଏ ଯଦି ଆମେ ଫେରିଯାନ୍ତୁ ସେହି ମାନବଲୋକକୁ ।

ଅର୍ଯ୍ୟମା—କିନ୍ତୁ ଏଠାରେ ଯେ ଆମର ଗୁରୁଦାୟିତ୍ୱ ଅଛି, ସନାତନ। ମାନବ ଯେତେବେଳେ ନିଜର ସ୍ୱର୍ଗତ ପୂର୍ବପୁରୁଷମାନଙ୍କୁ ସ୍ମରଣ କରି ଓ ଆମରି ଉଦ୍ଦେଶ୍ୟରେ ଜଳାଞ୍ଜଳି ଦିଅନ୍ତି, ସେତେବେଳେ ସେସବୁ ଭକ୍ତିର ଅର୍ଘ୍ୟ ପିତୃପିତାମହଙ୍କର ପ୍ରତିନିଧି ରୂପେ ଆମେ ହିଁ ଗ୍ରହଣ କରିଥାଉଁ ଆବହମାନ କାଳରୁ । ଆମର କର୍ତ୍ତବ୍ୟ କଠୋର, ସନାତନ । ଆମେ ପୃଥିବୀକୁ ଫେରିଗଲେ, ମନୁଷ୍ୟର ଭକ୍ତିର ଅର୍ଘ୍ୟ ଗ୍ରହଣ କରିବ କିଏ ?

ସନାତନ—ଭକ୍ତିର ଅର୍ଘ୍ୟ ଲକ୍ଷ ଯୋଜନ ଦୂରରୁ ଗ୍ରହଣ ନ କରି ଅତି ନିକଟରୁ ଗ୍ରହଣ କରିବାକୁ ଇଚ୍ଛା ହୁଏ, ଅର୍ଯ୍ୟମା ଆଉ ତାଙ୍କ ସଙ୍ଗେ ମାନବର ଦୈନନ୍ଦିନ ପ୍ରବୃତ୍ତିର ଅନୁଭବ କରିବାକୁ ଇଚ୍ଛା ହୁଏ ।

ଅର୍ଯ୍ୟମା—କିନ୍ତୁ କିପରି ଫେରିବା ମାନବ ଲୋକକୁ । ବହୁ ଯୁଗ ଧରି ପୃଥିବୀରୁ ବିଚ୍ଛିନ୍ନ ଆମେ । ପୃଥିବୀର ସୁଖ ଦୁଃଖ, ପାପପୁଣ୍ୟର ଆବର୍ତ୍ତର ବହୁ ଦୂରରେ, ବହୁ ଊର୍ଦ୍ଧ୍ୱରେ ଏକ ଦ୍ୱନ୍ଦ୍ୱାତୀତ ଲୋକରେ ବହୁ କାଳ ଧରି ରହି ଆସିଥାଉଁ ଆମେ । କେବଳ ଶୋକସନ୍ତପ୍ତ ମାନବ-ମାନଙ୍କର ଅଶ୍ରୁର ଅର୍ଘ୍ୟ ଆସି ଆମର ଆତ୍ମାକୁ ବେଳେ ବେଳେ ତୃପ୍ତ କରେ । ମନୁଷ୍ୟର ଇହ ଶରୀର ଶେଷ ପରେ ତା'ର ଆତ୍ମା ଏଠାକୁ ଆସେ, ଆଉ ସଙ୍ଗେ ସଙ୍ଗେ ଆସେ

ତାର ପ୍ରିୟ ପରିଜନଙ୍କର ଅଶ୍ରୁର ବାଷ୍ପ ଆମକୁ ତୃପ୍ତ କରିବା ପାଇଁ । ଆମର ତୃପ୍ତିରୁ ସେମାନେ ପାଆନ୍ତି ଆଶୀର୍ବାଦ ।

ସନାତନ—କେବଳ ସେତିକି ନୁହେଁ, ଅର୍ଯ୍ୟମା । ପୃଥିବୀର ସପ୍ତ ସମୁଦ୍ରର ଜଳୋଚ୍ଛ୍ୱାସ ଏ ଚନ୍ଦ୍ରଲୋକକୁ ଆଲିଙ୍ଗନ କରିବାକୁ ବ୍ୟାକୁଳ । ଯେଉଁ ଦିନୁ ସମୁଦ୍ର ମନ୍ଥନରୁ ଚନ୍ଦ୍ର ଜାତ ହେଲା, ସେହି ଦିନଠାରୁ ଅଦ୍ୟାବଧି ପୃଥିବୀ ଚନ୍ଦ୍ର-ଲୋକକୁ ଭୁଲି ନାହିଁ । ପ୍ରତି ପୂର୍ଣ୍ଣିମା ଓ ଅମାବସ୍ୟାରେ ପୃଥିବୀରେ ସମସ୍ତାର ଜଳୋଚ୍ଛ୍ୱାସ ପ୍ରଶାନ୍ତ ମହାସାଗରକୁ ମଧ୍ୟ ଆନ୍ଦୋଳିତ କରେ । କିନ୍ତୁ ଚନ୍ଦ୍ର ଥାଏ ନିର୍ବିକାର ନିସ୍ପନ୍ଦ ।

ଅର୍ଯ୍ୟମା—ଆମେ ମଧ୍ୟ ଚନ୍ଦ୍ରର ସମଧର୍ମୀ, ନିର୍ବିକାର ହେବା ଉଚିତ, ବନ୍ଧୁ ! ମାନବ ଲୋକରେ ପ୍ରଶାନ୍ତ ମହାସାଗରରେ ପ୍ରବଳ ଜଳୋଚ୍ଛ୍ୱାସ ସ୍ୱାଭାବିକ । କିନ୍ତୁ ଶୀତଳତାର ଲୀଳାଭୂମି ଏ ପିତୃଲୋକରେ ସେ ପ୍ରକାର ଭାବାବେଶ ଶୋଭା ପାଏ ନାହିଁ । ଏଠାରେ ତାଣ୍ଡବଲୀଳାର ସ୍ଥାନ ନାହିଁ, ଯାହା ମନ୍ଦ ସମୀରଣରୁ ପ୍ରବଳ ପ୍ରଭଞ୍ଜନରେ ପରିଣତ ହୋଇପାରେ, ଏଠାରେ ଜଳ ନାହିଁ ଯାହା ମୃଦୁ ପ୍ରବାହରୁ ପ୍ରଳୟଙ୍କରୀ ବନ୍ୟାରେ ପରିଣତ ହୋଇପାରେ ।

ସନାତନ—ଆମର ଅନନ୍ତକାଳ ତପସ୍ୟା, ସହସ୍ର ସହସ୍ର ବର୍ଷ ଧରି ଏକ ବୈଚିତ୍ର୍ୟହୀନ ଜୀବନ, ଶାନ୍ତିର ଏକ ନିର୍ଦ୍ଦିଷ୍ଟ ଗୁମ୍ଫାରେ ବାସ ଓ ରାତ୍ରିଯାପନ, ରୂପ-ରସ ଗନ୍ଧଭରା ସୌନ୍ଦର୍ଯ୍ୟରୁ

ବହୁଦୂରରେ କାଳାତିପାତ—ଆମର ସମସ୍ତଙ୍କୁ ଅତି ଦୀର୍ଘ ଜଣ ଦେଉଛି, ଅର୍ଯ୍ୟମା ! ସାମାନ୍ୟ ଯଦି କିଛି ବୈଚିତ୍ର୍ୟ ଦେଖାଯାନ୍ତା, ତେବେ ଆମର ଜୀବନ ଜୀବନୀୟ ହୁଅନ୍ତା । ଥରେ ଥରେ ମନେ ହୁଏ, ପୃଥିବୀର ଆକାଶରେ ଉଡୁଥିବା ଗୋଟିଏ ପକ୍ଷୀ ଯଦି ଦିନେ ପଥଭ୍ରଷ୍ଟ ହୋଇ ଏ ଚନ୍ଦ୍ର-ଲୋକକୁ ଆସନ୍ତା, ତେବେ ତାର ମଧୁର କାକଳି ଅମୃତ ପରି ସ୍ପୃହଣୀୟ ହୁଅନ୍ତା ।

ଅର୍ଯ୍ୟମା—କିଏ ଜାଣେ ହୁଏ ତ ଦିନେ ତୁମର ସବୁ କାମନା ତୃପ୍ତ ହେବ । କିନ୍ତୁ ସେହି ତୃପ୍ତି ହିଁ କ'ଣ ଜୀବନର ଚରମ ଆକାଙ୍କ୍ଷା ହେବ ? ତୃପ୍ତି ହିଁ ଅଶାନ୍ତି ସୃଷ୍ଟି କରେ । ଅଶାନ୍ତି ଆମର ପଦମର୍ଯ୍ୟାଦାର ଅନୁକୂଳ ନୁହେଁ ସନାତନ ।

ସନାତନ—ମୁଁ ଦେବତା ପରି ରହିବାକୁ ଚାହେଁ ନାହିଁ ଅର୍ଯ୍ୟମା ! ମୁଁ ଚାହେଁ ଅଶାନ୍ତିର ପରିଣତ ଶାନ୍ତି, ଅତୃପ୍ତିର ପରେ ତୃପ୍ତି । ପିତୃଲୋକରେ ଥାଇ ସୁଦ୍ଧା ମୋର ହୃଦୟରେ ବେଳେ ବେଳେ ମାନବିକତାର ସ୍ପନ୍ଦନ ଜାଗେ । ଯେଉଁ ମାନବମାନଙ୍କର ଆତ୍ମା କର୍ମମୟ ଜୀବନ ପରେ ଏଠାକୁ ଆସନ୍ତି, ସେହି ଆତ୍ମାର ସଂସ୍ପର୍ଶରେ ବୋଧହୁଏ ମୋର ମନରେ ଏଇପ୍ରକାର ଭାବନା ଜାଗେ ।

ଅର୍ଯ୍ୟମା—କିନ୍ତୁ ସେ ଭାବନା ଶୁଭଙ୍କର ନୁହେଁ, ସନାତନ । ମନୁଷ୍ୟର ସମସ୍ତ ଅଶାନ୍ତି, ସମସ୍ତ ବିଶୃଙ୍ଖଳା ତା'ର ଚିତା ସହିତ ଭସ୍ମସାତ୍ ହୋଇଯାଏ । ସେହି ଅଶାନ୍ତିକୁ ଯଦି ଏଠାକୁ ସ୍ୱାଗତ କରାଯାଏ, ତେବେ ଚନ୍ଦ୍ରଲୋକ ଆଉ

ପୂଣ୍ୟ ଲୋକ ହୋଇ ରହିବ ନାହିଁ । ଏହା ହେବ, ମିଥ୍ୟା, ଘୃଣା, ଦୁର୍ଗତି, ପାପ ଓ ରାକ୍ଷସୀ ପ୍ରବୃତ୍ତିର ଲୀଳାଭୂମି । ସେତେବେଳେ ଏହା ଆଉ ଦେବତାମାନଙ୍କର, ପିତୃଗଣଙ୍କର ବାସଭୂମି ହୋଇ ରହିବ ନାହିଁ । ରୂପ ରସ ଗନ୍ଧରେ ଅମୃତମୟୀ ଓ ସୌନ୍ଦର୍ଯ୍ୟର ଲୀଳାଭୂମି ହୋଇଥିଲେ ସୁଦ୍ଧା, ପୃଥିବୀ ଯେପରି କାମ, କ୍ରୋଧ, ଘୃଣା, ଜୁଗୁପ୍ସା ଆଦି ନାରକୀୟ ପ୍ରବୃତ୍ତିଦ୍ୱାରା କଳୁଷିତ ଚନ୍ଦ୍ରଲୋକକୁ ସେପରି କଳୁଷିତ ହେବାର ଦେଖିବାକୁ ଚାହଁ ତୁମେ ? ନା, ନା, ସନାତନ ଏଇ ଭଲ । ଆମେ ଶାନ୍ତିରେ ରହିବା ଭଲ ।

ସନାତନ—ମୁଁ ଚନ୍ଦ୍ରଲୋକକୁ ଶଇତାନକୁ ନିମନ୍ତ୍ରଣ କରିବାକୁ ଚାହୁଁ ନାହିଁ । ମୁଁ କେବଳ ଚାହେଁ ଜୀବନ, ଗତି । ମୁଁ ଚାହେଁ ପ୍ରଗତି ।

ଅର୍ଯ୍ୟମା—ପ୍ରଗତି ? ପ୍ରଗତିର ଶେଷ ଯେଉଁଠି, ଆମେ ସେଇଠାରେ ପହଞ୍ଚିଥାଇଁ ବହୁ ଯୁଗ ପୂର୍ବେ ।

ସନାତନ—ମୁଁ ଚାହେଁ କିଛି ନୂତନ ଅଭିଜ୍ଞତା । କିଛି ଅଭୂତପୂର୍ବ ଘଟଣା ।

(ହଠାତ୍ ଏଇ ସମୟରେ ଉପରୁ ଏକ ଧାତୁପିଣ୍ଡର ପତନ ହେଲା)

ଅର୍ଯ୍ୟମା—କି ଆଶ୍ଚର୍ଯ୍ୟ ! ତୁମେ ନୂତନର କଳ୍ପନା କରିବା ମାତ୍ରେ ଏକ ଉଲ୍‌କାପିଣ୍ଡ ଆସି ପଡ଼ିଲା ।

ସନାତନ—( ଧାତୁପିଣ୍ଡକୁ ପରୀକ୍ଷା କରି ଦେଖି ) ନା, ନା, ଏହା ଉଲ୍‌କା ନୁହେଁ । ଏହା ଏକ ଧାତୁପିଣ୍ଡ । ପୃଥିବୀର ଲୌହ-

ଧାତୁ ପଢ଼ ଦେଖାଯାଉଛି । ଆଉ ଏଥିରେ ଅଛି ଦାଆ ଓ ହାତୁଡ଼ିର ଚିହ୍ନ ।

ଅର୍ଯ୍ୟମା—ଦାଆ ଓ ହାତୁଡ଼ି ? ଧାନ ଓ ଗହମ କାଟିବା ପାଇଁ ଦାଆ ବ୍ୟବହୃତ ହୁଏ ନା ? ଆଉ ହାତୁଡ଼ି ବୋଧହୁଏ ଶିଳ୍ପ କାର୍ଯ୍ୟରେ ବ୍ୟବହୃତ ହୁଏ । କିନ୍ତୁ ଏ ଅଦ୍ଭୁତ ସଂକେତ-ସୂଚକ ଧାତୁଖଣ୍ଡ ଏଠାରେ ପଡ଼ିବାର ଅର୍ଥ କ'ଣ ହୋଇ-ପାରେ ? ସନାତନ, ନିଶ୍ଚୟ ଏଥିରେ କିଛି ବିପଦର ସୂଚନା ଅଛି । ତୁମର ଚିନ୍ତାକୁ ଫଳବତୀ କରିବା ପାଇଁ ନିଜେ ଭଗବାନ ଏହାକୁ ପଠାଇ ନାହାଁନ୍ତି ତ ?

ସନାତନ—ମୋର ଚିନ୍ତାର ଫଳରେ ଯଦି ଆଜି ଏଇ ଅଦ୍ଭୁତ ସଂକେତ ଚିହ୍ନିତ ଧାତୁପିଣ୍ଡ ଆସି ପହଞ୍ଚିଥାଏ, ତେବେ ମୋର ପୂର୍ଣ୍ଣ ବିଶ୍ୱାସ, ଆମର ବୈଚିତ୍ର୍ୟହୀନ ଜୀବନରେ ଏକ ନୂତନ ଅଭିଜ୍ଞତା ଦେଖା ଦେବାର ସମୟ ଆସିଛି । ହୁଏ ତ ମନୁଷ୍ୟ, ମୃତ୍ୟୁର ପରେ ନୁହେଁ, ତା'ର ଜୀବନ-କାଳ ମଧ୍ୟରେ ଚନ୍ଦ୍ରଲୋକକୁ ଆସିବାର କଳ୍ପନା ଓ ଚେଷ୍ଟା କରୁଛି ଓ ଏଇ ଧାତୁପିଣ୍ଡ ତା'ର ଚେଷ୍ଟା ଫଳବତୀ କରିବା ପାଇଁ ଏକ ପ୍ରାଥମିକ ପରୀକ୍ଷା ହୋଇପାରେ ।

ଅର୍ଯ୍ୟମା—ନା, ନା, ସେ ଦିନ ନ ଆସୁ । ମନୁଷ୍ୟର ପାଦ ସ୍ପର୍ଶଦ୍ୱାରା ଏ ପୁଣ୍ୟଲୋକ କଳୁଷିତ ନ ହେଉ । ପୃଥିବୀର ବାୟୁମଣ୍ଡଳ ଯେପରି ଆଜି ପରସ୍ପର ଈର୍ଷା, ଦ୍ୱେଷ, ଜିଗୀଷାର ଆଣବିକ ଅସ୍ତ୍ରଦ୍ୱାରା ବିଷାକ୍ତ ହୋଇଛି, ଧ୍ୱଂସର ବିଭୀଷିକାରେ ହତ-ଚେତନ ହୋଇଛି, ସେ କଳୁଷିତ ବାୟୁର, ସେ ବିଭୀଷିକାର,

ସେ ଶୀତଳ ସମରର ସଂକ୍ରମଣ ଏ ଚନ୍ଦ୍ରଲୋକକୁ ଆକ୍ରମଣ
ନ କରୁ । ଆସ ଏଇଥିପାଇଁ ପ୍ରାର୍ଥନା କରିବା ।

( ଉଭୟେ ଜାନୁପାତ କରି ପ୍ରାର୍ଥନା କଲେ )

ଓଁ ଶନ୍ନୋ ମିତ୍ରଃ ଶମ୍ବରୁଣଃ ଶନ୍ନୋ ଭବତ୍ୱର୍ଯ୍ୟମା
ଶନ୍ନ ଇନ୍ଦ୍ରୋବୃହସ୍ପତି ଶନ୍ନୋ ବିଷ୍ଣୁରୁରୁକ୍ରମଃ ।

(ହଠାତ୍ ଏକ ଘର୍ଘର ଶବ୍ଦରେ—ବାୟୁଯାନର ଅବତରଣ ଶବ୍ଦ ଭଳି କର୍କଶ ଶବ୍ଦରେ ସେମାନଙ୍କର ପ୍ରାର୍ଥନା ଅଶ୍ରାବ୍ୟ ହେଲା । କିଛିକ୍ଷଣ ପରେ ନେପଥ୍ୟରେ ଗୋଟିଏ ଯନ୍ତ୍ରର ଅବତରଣ ଶବ୍ଦ ହେଲା ଓ କିଛିକ୍ଷଣ ପରେ ପ୍ରବେଶ କଲେ ଦୁଇ ଜଣ ବୈମାନିକ ବିଚିତ୍ର ବେଶଭୂଷାରେ—ସମଗ୍ର ଶରୀର ବର୍ମଦ୍ୱାରା ଆବୃତ ହୋଇଛି । ସେମାନଙ୍କର ଆଖି ଦୁଇଟି କେବଳ ଦେଖା ଯାଉଛି ।

ଏହି ସମୟରେ ଅର୍ଯ୍ୟମା ଓ ସନାତନ ଆଡ୍ଆଡ଼କୁ ଗୁଞ୍ଜିଗଲେ)

ପ୍ରଥମ ବୈମାନିକ—ହେଲ୍ଲୋ ଭେଲେଣ୍ଟିନା, ଅତ୍ୟନ୍ତ ଆନନ୍ଦର କଥା ଯେ ଆମେ ନିରାପଦରେ ଚନ୍ଦ୍ରଲୋକରେ ଅବତରଣ କରିଥାଇଁ । ଏହା ଆମ ପକ୍ଷରେ ଓ ଆମର ପିତୃଭୂମି ରୁଷିଆ ପକ୍ଷରେ ଏକ ଅତି ସ୍ମରଣୀୟ ଦିବସ । ଆଜିଠାରୁ ଚନ୍ଦ୍ରଲୋକ ଆମର । ରୁଷିଆର ନାଗରିକ ଓ ନାଗରିକା-ରୂପେ ଆମେ ଚନ୍ଦ୍ରଲୋକରେ ପ୍ରଥମେ ପଦାର୍ପଣ କରିଥାଇଁ ସେଥିପାଇଁ ଆମେ ଚନ୍ଦ୍ରକୁ ରୁଷିଆର ଏକ ଉପନିବେଶ ରୂପେ ଦାବୀ କରି ପାରିବା । କିନ୍ତୁ ଆମେ ହେଉଛୁଁ ଉପନିବେଶବାଦର ଘୋର ବିରୋଧୀ ।

ଭେଲାଣ୍ଟିନା—ସାଥୀ ଗାଗାରିନ୍, ତୁମର ନାମ ମଧ୍ୟ ବିଶ୍ୱ ଇତିହାସରେ ଚିରସ୍ମରଣୀୟ ହୋଇ ରହିବ । ତୁମେହିଁ ପ୍ରଥମ ମହାକାଶଯାତ୍ରୀ ରୂପେ ପୃଥିବୀକୁ କ୍ଷିପ୍ରଗତିରେ ପରିକ୍ରମା କରି ବିଶ୍ୱକୁ ଚକିତ କରିଥିଲ । ତୁମେ ଓ ମୁଁ ଏକା ସଙ୍ଗରେ ଆଜି ଏଇ ଚନ୍ଦ୍ରଲୋକରେ ପଦାର୍ପଣ କରିଥାଉଁ । ଏବେ ଆମ ଆମର ପ୍ରଥମ କର୍ତ୍ତବ୍ୟ ସମାପନ କରିବା । ରୁଷିଆର ଜାତୀୟ ପତାକା ଏଇ ଚନ୍ଦ୍ରଲୋକରେ ପ୍ରୋଥିତ କରି ପିତୃଭୂମିର ଗୌରବବୃଦ୍ଧି କରିବା ।

(ନେପଥ୍ୟରୁ ଏକ ରୁଷୀୟ ପତାକା ଆଣି ମାଟିରେ ପୋତିଲେ)

ଗାଗାରିନ—(ଏକ ନକ୍ସା ବାହାର କରି ଓ ଚାରିଆଡ଼େ ଦୃଷ୍ଟି ପକାଇ) ଓଃ, ଏଇଟା ବୋଧହୁଏ ସାଗରର ତୀର । ଆମର ପୂର୍ବତନ ବୈଜ୍ଞାନିକମାନଙ୍କର ରସବୋଧକୁ ପ୍ରଶଂସା ନ କରି ରହି ହୁଏ ନାହିଁ । ଜୀବନହୀନ, ପଶୁ ପକ୍ଷୀ-କୀଟ-ପତଙ୍ଗହୀନ ଚନ୍ଦ୍ରଲୋକରେ ପୁଣି ସଙ୍କଟର ସମୁଦ୍ର । ସମୁଦ୍ର ପୁଣି ଜଳଶୂନ୍ୟ । ହଁ ସଙ୍କଟ ଥାଆନ୍ତା—ଯଦି ଆମେରିକା ବା ଇଉରୋପର ଅନ୍ୟାନ୍ୟ ଦେଶର ମହାକାଶ-ଯାତ୍ରୀମାନେ ଏଠାକୁ ପହଞ୍ଚିବାର ସମ୍ଭାବନା ଥାଆନ୍ତା । ଯଦି ପୃଥିବୀ ପରି ଏଠାରେ ମଧ୍ୟ ଶୀତଳ ବା ଉଷ୍ଣ ଯୁଦ୍ଧର ସମ୍ଭାବନା ଥାଆନ୍ତା । କିନ୍ତୁ କି ଶାନ୍ତ କି ନିର୍ଜନ ଏଇ ଚନ୍ଦ୍ରଲୋକ । କେବଳ ତୁମେ ଆଉ ମୁଁ—ହିଁ, ତୁମେ ଆଉ ମୁଁ । ପୃଥିବୀର ଆଦିମ ମାନବ ଓ ମାନବୀ—ଆଦମ୍

ଓ ଇଭ ପରି । ଏକାକୀ ଅଥଚ ସ୍ୱୟଂସମ୍ପୂର୍ଣ୍ଣ । ଆମେ ଦୁହେଁ ଜୀବନର ଏକ ନୂତନ ଅଭିଜ୍ଞତାର ଊଷାକାଳରେ ପହୁଞ୍ଚିଥାଇଁ ଚନ୍ଦ୍ରଲୋକର ଏକ ଉଜ୍ଜ୍ୱଳ ପ୍ରଭାତରେ ।

ଭେଲେଣ୍ଟିନା—(ହସି) ଓଃ ଚମତ୍କାର ତୁମର ଭାବପ୍ରବଣତା—ଠିକ୍ ଯେପରି କବିତାରେ କଥା କହୁଛ । କିନ୍ତୁ ଆଦାମ୍ ଓ ଇଭ ସଙ୍ଗରେ ଭଗବାନ୍ ଓ ଶଇତାନ—ଦୁଇଜଣ ନ ହେଲେ ଜୀବନର ନାଟକ ଅସମ୍ପୂର୍ଣ୍ଣ ରହିଯାଏ ଗାଗାରିନ୍ । ତା' ସଙ୍ଗରେ ଖୋଜିବାକୁ ହେବ, ଜ୍ଞାନବୃକ୍ଷର ଫଳ ଏଇ ବୃକ୍ଷ ଲତା ଶୂନ୍ୟ ଚନ୍ଦ୍ରଲୋକରେ । ତୁମେ ପୃଥିବୀରୁ ଏଠାକୁ ଜ୍ଞାନବୃକ୍ଷର ଫଳ ଆଣିବାକୁ ଭୁଲ ଯାଇନାହିଁ ତ ?

ଗାଗାରିନ—ଭଗବାନ୍ ଓ ଶଇତାନ ! ତୁମର କଳ୍ପନା ବ ହୁତ ଉଚ୍ଚକୋଟିର ଭେଲେଣ୍ଟିନା । କିନ୍ତୁ ଧର୍ମୀକର ସୃଷ୍ଟି ଭଗବାନ୍ ଓ ଶଇତାନ ବଦଳରେ ଆସ ଆମେ ଲେନିନ ଓ ଷ୍ଟାଲିନଙ୍କ ସ୍ମୃତିରେ ସନ୍ତୁଷ୍ଟ ରହିବା । ଅବଶ୍ୟ ଏ ମଧ୍ୟରେ ଯଦି ପ୍ରକୃତରେ ଭଗବାନଙ୍କ ସଙ୍ଗେ ଦେଖା ହୁଏ ଓ ପରିଚୟ ହୁଏ, ତେବେ ତାହା ହେବ ଏକ ରହସ୍ୟ ଅଭିଜ୍ଞତା । ଘରକୁ ଫେରିଗଲା ପରେ ସେ ବିଷୟରେ ଆଲୋଚନା କରିବାକୁ ଓ ଅଦ୍ଭୁତ କାହାଣୀ ଭଳି ଆମର ଆଶ୍ଚର୍ଯ୍ୟ ଅନୁଭୂତି ବର୍ଣ୍ଣନା କରିବାକୁ ସୁଯୋଗ ଓ ସୌଭାଗ୍ୟ ମିଳିବ ।

ଭେଲେଣ୍ଟିନା—ଏବେ କିନ୍ତୁ କଳ୍ପନା ରାଜ୍ୟରୁ ଫେରି ଆମକୁ କିଛି ପରିଶ୍ରମ କରିବାକୁ ପଡ଼ିବ । ତୁମର ମନେ ଅଛି—

ଏଠାରେ ଆମର କାର୍ଯ୍ୟ ତାଲିକାରେ ପ୍ରଥମ କାର୍ଯ୍ୟ ହେଲା, ଏ ଭୂମିରେ ଜାତୀୟ ପତାକା ଉତ୍ତୋଳନ ଓ ଦ୍ୱିତୀୟ କାର୍ଯ୍ୟ ହେଲା, ଚନ୍ଦ୍ରଲୋକକୁ ମନୁଷ୍ୟର ବାସୋପଯୋଗୀ କରିବା ପାଇଁ ପୃଥିବୀରୁ ଅଣା ଯାଇଥିବା ତରଳ ଅମ୍ଳଜାନର ଆଧାରମାନ ଖୋଲି ଏଠାରେ ଅମ୍ଳଜାନ ଢ଼ାଳିବାକୁ ହେବ, ଯେପରି ନିଖୋଲ ଦେହରେ ମଧ୍ୟ ଆମେ ଏଠାରେ ସ୍ୱଚ୍ଛନ୍ଦରେ ରହିପାରିବା ।

ଗାଗାରିନ—ହଁ, ହଁ, ଠିକ୍ ମନେ ପକାଇଛୁ ଭେଲେଣ୍ଟିନା । ଏଠାରେ ଆମକୁ ବସବାସ କରିବାକୁ ହେବ । ଅମ୍ଳଜାନ ଢ଼ାଳିବାକୁ ହେବ । ରହ ମୁଁ ଅମ୍ଳଜାନ ସିଲିଣ୍ଡାରଟିଏ ଆଣୁଛି ।

ବାହାରିଯାଇ ଗୋଟିଏ ଅମ୍ଳଜାନ ସିଲିଣ୍ଡାର କାନ୍ଧରେ ଧରି ପ୍ରବେଶ କଲେ)

ଭେଲେଣ୍ଟିନା—ଆଃ ଏଟି କ'ଣ ଖୁବ ହାଲୁକା ଜଣାପଡୁଛି ? ଏହା ହାଲୁକା ଜଣା ପଡ଼ିବାର କଥା ମଧ୍ୟ । ଏହା ପରା ଚନ୍ଦ୍ରଲୋକ । ଆସ ଆମେ ମଧ୍ୟ ହାଲୁକା ହେବାର ଚେଷ୍ଟା କରିବା ।

ଭେଲେଣ୍ଟିନା—[ହସି] କିନ୍ତୁ ଚନ୍ଦ୍ରଲୋକକୁ ଆସି ତୁମର ବୁଦ୍ଧି ଯେପରି ହାଲୁକା ହୋଇ ନ ଯାଏ ସେ ବିଷୟରେ ସତର୍କ ଥିବ ।

ଗାଗାରିନ୍—[ଅମ୍ଳଜାନ ଆଧାର ଖୋଲିବାକୁ ଚେଷ୍ଟା କରି] ହଉ ତେବେ ଏଥର·········

ଅର୍ଯ୍ୟମା ଓ } [ଅନ୍ତରାଳରୁ ବାହାରି ପଡ଼ି] ରକ୍ଷ, ରକ୍ଷ, ଏ ଦୁଷ୍କର୍ମ
ସନାତନ } କର ନାହିଁ ।
ଗାଗରିନ ଓ } [ଚମକି ପଡ଼ି] କିଏ ? ତେବେ ଆମେ ଏକା
ଭେଲେଣ୍ଟିନା } ନୋହୁ ?

[ଗାଗାରିନ ପକେଟରୁ ପିସ୍ତଲ କାଢ଼ି ସନାତନଙ୍କ ଓ ଅର୍ଯ୍ୟମାଙ୍କ ପ୍ରତି ଲକ୍ଷ୍ୟ କଲେ]

ଗାଗାରିନ୍—ସାବଧାନ ! ଯଦି ତୁମେମାନେ ଆମର କିଛି ଅନିଷ୍ଟ କରିବାକୁ ଚେଷ୍ଟା କର, ତେବେ ତୁମର ଦୁଇ ଜଣଙ୍କର ପ୍ରାଣ ଯିବ ।

ଅର୍ଯ୍ୟମା – ଭୟ କର ନାହିଁ । ଆମେ ତୁମର କିଛି ଅନିଷ୍ଟ କରିବୁ ନାହିଁ । ତୁମେ ମଧ୍ୟ ଆମର ପ୍ରାଣ ନେଇ ପାରିବ ନାହିଁ । କିନ୍ତୁ ତୁମେ ଏ ଚନ୍ଦ୍ରଲୋକର କିଛି ଅନିଷ୍ଟ କର ନାହିଁ ।

ଗାଗାରିନ୍—ତେବେ ଆସ, ଆମେ ବନ୍ଧୁତା କରିବା । ମୁଁ ଆପଣ-ମାନଙ୍କର ପରିଚୟ ଜାଣି ପାରେ କି ? ଏଇ ହେଉଛନ୍ତି ମୋର ବାନ୍ଧବୀ ଭେଲେଣ୍ଟିନା ଟେରେସ୍କୋଭା !

ଭେଲେଣ୍ଟିନା—ସୁପ୍ରଭାତ ! ଆପଣମାନେ ମୋର ପିତାମହ ଓ ମାତାମହ ଭଳି ଦେଖା ଯାଉଛନ୍ତି ।

ଅର୍ଯ୍ୟମା—ହଁ, ଆମେ ହିଁ ପିତୃଗଣ ।

ଗାଗାରିନ୍—ଓଃ, ତେବେ ଆପଣ ହେଉଛନ୍ତି ପିଟର୍ ? କିନ୍ତୁ କେଉଁ ପିଟର୍ ? ରୁଷିଆର ସମ୍ରାଟ ପିଟର୍ ( Peter the Great ) ନା ମୁନି ପିଟରଙ୍କ ସଙ୍ଗେ ଆପଣଙ୍କର କୌଣସି

ସମ୍ପର୍କ ଅଛି ? ଖ୍ରୀଷ୍ଟଙ୍କ ପ୍ରିୟ ଶିଷ୍ୟ ପିଟର୍ ଆପଣଙ୍କର କଣ ହୁଅନ୍ତି ?

ଭେଲେଣ୍ଟିନା—ନା, ଗାଗାରିନ୍ ତୁମେ ଇତିହାସ ଭୁଲିଯାଇଛ । ତୁମେ ଜାଣ, ରୁଷିଆର ସମ୍ରାଟ ପିଟର ଦାଢ଼ିର ଘୋର ବିରୋଧୀ ଥିଲେ, ଆଜ୍ଞା ପ୍ରତ୍ୟେକ ରାସ୍ତାରେ ଭଣ୍ଡାରୀ ରଖି ଧର୍ମଯାଜକମାନଙ୍କର ସୁଦ୍ଧା ଦାଢ଼ି ଜବରଦସ୍ତି ଖିଅର କରାଉଥିଲେ । ଅଥଚ ଆମର ଅଜାମାନଙ୍କର ହାତେ ଲମ୍ବର ଦାଢ଼ି ଅଛି ।

( ଉଭୟେ ଉଚ୍ଚ ସ୍ୱରରେ ହସି ପକାଇଲେ )

ଭେଲେଣ୍ଟିନା—ଆମର ଧୃଷ୍ଟତା ମାର୍ଜ୍ଜନା କରିବେ, ଅଜା । ଆମ ରୁଷିଆରେ ଅଜାମାନଙ୍କ ସହିତ ନର୍ମ ହାସ୍ୟ ଆଳାପର ଏକ ଅପରିହାର୍ଯ୍ୟ ଅଙ୍ଗ ।

ସନାତନ—ଠିକ୍ କଥା । ଆମେ ମଧ୍ୟ ଦୁଇଟି ନାତି ନାତୁଣୀ ବୋହୂଙ୍କୁ ସଶରୀରରେ ଦେଖିବାକୁ ପାଇ ବହୁ ସହସ୍ର ବର୍ଷ ପରେ ହାସ୍ୟାଳପର ସୁଯୋଗ ପାଇଲୁ ।

ଗାଗାରିନ୍—ଅଜା, ତୁମେ କଣ ଭାବୁଛ, ଆମେ ଦୁହେଁ ସ୍ୱାମୀ ସ୍ତ୍ରୀ । ନା, ନା, ସେ ଭାବନା ତୁମର ଭୁଲ୍ ।

ଅଚ୍ଛା, ତୁମର ନାଆଁମାନ ଆମେ ଏପର୍ଯ୍ୟନ୍ତ ଜାଣି ପାରିଲୁଁ ନାହିଁ ।

ସନାତନ—ମୋର ନାମ ସନାତନ ଓ ମୋର ସାଥୀ ଇଏ ହେଉଛନ୍ତି । ଅର୍ଯ୍ୟମା ।

ଭେଲେଣ୍ଟିନା—( ଚମକି ପଡ଼ି ପଛୁଘୁଞ୍ଚା ଦେଲେ ଓ . ବିସ୍ମାରିତ ନେତ୍ରରେ ଗାଗାରିନ୍ ଆଡ଼କୁ ଅନାଇ ) Oh my sainted aunt, ନିଜେ ଶଇତାନ୍ ! ଆଚ୍ଛା, How do you do, Comrade Satan ! ( କରମର୍ଦ୍ଦନ ପାଇଁ ହାତ ବଢ଼ାଇଦେଲେ ) ଖ୍ରୁଷ୍ଟବ୍ ତୁମେ କଣ ଶଇତାନ୍? ନା, ଏହା ତୁମର ଆଉ ଏକ ନୂତନ ପରିହାସ ?

ସନାତନ—( କରମର୍ଦ୍ଦନ କରି ) ମୋ ନାମ ଶଇତାନ ନୁହେଁ, ସନାତନ ।

ଭେଲେଣ୍ଟିନା—( ଅସୀମାଙ୍କ ଆଡ଼କୁ ହାତ ବଢ଼ାଇ ) How do you do, Comrade...?

ଅସୀମା—( କରମର୍ଦ୍ଦନ କରି ) ମୁଁ କମ୍ରେଡ୍ ଅସୀମା !

ଭେଲେଣ୍ଟିନା—( ବିସ୍ମିତ ହୋଇ ) Comrade Hariman ! ଅଚ୍ଛା, ତୁମେ କଣ ବାସ୍ତବିକ ଆମେରିକା ଯୁକ୍ତରାଷ୍ଟ୍ରରୁ ଆସିଛ ? ମନ୍ତ୍ରୀ Averil Harrimanଙ୍କ ସହିତ କି ସମ୍ପର୍କ ଅଛି ? ଆଉ ଯଦି ଥାଏ, ତେବେ ସର୍ବନାଶ । ଆମର ଏତେ ପରିଶ୍ରମ, ଏତେ ବୈଜ୍ଞାନିକ ଗବେଷଣା, ଏତେ ସାହସ—ସବୁ ବୃଥା ହେଲା । ରୁଷିଆ ଚନ୍ଦ୍ରକୁ ଜୟ କରିବା ପୂର୍ବରୁ ଯଦି ତୁମେ ଆମେରିକା ଯୁକ୍ତରାଷ୍ଟ୍ରର ନାଗରିକ ହାରିମାନଙ୍କର କୌଣସି ବଂଶୀୟ ଲୋକ ତୁମେ ଚନ୍ଦ୍ରଲୋକକୁ ଆସି ପାରିଛ, ତେବେ ଆମକୁ ଆମେରିକା ଯୁକ୍ତରାଷ୍ଟ୍ର ନିକଟରେ ହାର ମାନିବାକୁ ପଡ଼ିବ । ଏହାଠାରୁ

ଉନ୍ନ ଆନ୍ଦ ଶୋଚନୀୟ ବୈଜ୍ଞାନିକ ପରାଜୟ କଣ ହୋଇ-ପାରେ ?

ଅଁମା—ନା, ନା, ତୁମେ ଦୁଃଖ କର ନାହିଁ, ନାତୁଣୀ ! ମୁଁ ଆମେରିକା ଯୁକ୍ତରଷ୍ଟ୍ରର ନାଗରିକ ନୁହେଁ ।

ଗାଗାରିନ୍—( ହସି ) କହୁ ଶୁଣ ଭେଟିଲଣ୍ଟିନା, ଆମେରିକା ଯୁକ୍ତ-ରଷ୍ଟ୍ରର ନାଗରିକ ନ ହେଲେ ଶଇତାନର ସାଥୀ ହେବାକୁ ସାହସୀ ହେବ କଏ ?

ଭେଟିଲିଣ୍ଟିନା—ତୁମେ ଠିକ କହୁଛ, ଗାଗାରିନ୍ । ଆଚ୍ଛା, ଏବେ ଆମର କାମ ଆରମ୍ଭ କରିଯାଉ ।

ଗାଗାରିନ୍—କାମ ? ଓଃ...( ପୁଣି ଅମ୍ଳଜାନ ଆଧାର ଖୋଲିବାକୁ ଉଦ୍ୟତ ହେଲେ )

ଅଁମା—ମୁଁ କହୁଛି ବନ୍ଦ କର ସେ କାମ ।

ଗାଗାରିନ୍ - କାହିଁକି ? ଅଜା, ତୁମେ କଣ ଭାବୁଛ, ଏହା ଗୋଟିଏ ମାରାତ୍ମକ ବୋମା ? ନା, ନା, ଏଥିରେ କିଛି ବିପଦ ନାହିଁ । ଏଥିରେ କେବଳ ତରଳ ଅମ୍ଳଜାନର ଅଶେଷ ଗୁଣ । ମନୁଷ୍ୟ, ବନଜନ୍ତୁ, ତରୁଲତା—ସମସ୍ତଙ୍କର ଜୀବନ-ଧାରଣର ପ୍ରଧାନ ଉପାଦାନ ହେଉଛି ଅମ୍ଳଜାନ । ଏହି ଅମ୍ଳଜାନ ଯୋଗୁଁ ପୃଥିବୀରେ ଆଜି ଲକ୍ଷ କୋଟି ଜୀବନର ଅଭିନୟ ଚାଲିଛି । ଆଜି ଆମେ ଚନ୍ଦ୍ରଲୋକରେ ଜୀବନର ସୂତ୍ରପାତ କରିବାକୁ ଚାହୁଁ । ସେଥିପାଇଁ ଅମ୍ଳଜାନ ଉପହାରାର୍ଥେ ଓ ଏହା ହେଉଛି ଚନ୍ଦ୍ରକୁ ପୃଥିବୀର ପ୍ରଥମ ଜୀବନର ଅର୍ଘ୍ୟ ।

ଅର୍ପିମା—ଜୀବନର ରସାୟନ ବିଜ୍ଞାନ ଆମକୁ ଭଲ ଭାବରେ ଜଣା ଅଛି, ସାଥୀ । ପୃଥିବୀର ସମସ୍ତ ସୌନ୍ଦର୍ଯ୍ୟ ସତ୍ତ୍ୱେ ପୃଥିବୀର ନାଟକୀୟ ପ୍ରଗତି ସତ୍ତ୍ୱେ, ପାର୍ଥିବ ପ୍ରକୃତିର ଅମ୍ଳତା ପାଇଁ ମୁଁ ଦାୟୀ କରେ ଅମ୍ଳଜାନକୁ । ମୋର ନାମ ଶୁଣିଲାମାତ୍ରେ ତୁମେ ମୋତେ ଆମେରିକାବାସୀ ମନେ କରି ମୂର୍ଖଙ୍କୁ ଆମ୍ବିଳ କଲ କାହିଁକି ? ତାହାଁର କାରଣ—ତୁମର ଧମନୀର ପ୍ରତ୍ୟେକ ରକ୍ତବିନ୍ଦୁରେ ଅମ୍ଳଜାନର କିଛି ଅଂଶ ଅଛି ।

ତା'ପରେ ଦେଖ—କ୍ଷୟିଷ୍ଣୁତା । ଅମ୍ଳଜାନ ଯେଉଁ ପଦାର୍ଥକୁ ପ୍ରଜ୍ୱଳିତ କରେ, ତାକୁ କ୍ଷୟ କରେ । ବୃଦ୍ଧି ସଙ୍ଗରେ କ୍ଷୟ, ଯୌବନ ପରେ ଜରା—ଏ ସବୁ ପାଇଁ ଦାୟୀ କିଏ ? ଏଥିପାଇଁ ଅମ୍ଳଜାନ ହିଁ ଦାୟୀ । ତେଣୁ ଚିର ଯୌବନ ସମୃଦ୍ଧ ଏହି ଚନ୍ଦ୍ରଲୋକକୁ ଅମ୍ଳ ଓ ଦୂଷିତ କରିବାକୁ ତୁମେ ଚାହିଁବା ଉଚିତ ନୁହେଁ, ଗାଗାରିନ୍ । ମୋର ଅନୁରୋଧ, ତୁମେ ଏ ପବିତ୍ର ଭୂମିକୁ ଅମ୍ଳଜାନଦ୍ୱାରା କଳୁଷିତ କର ନାହିଁ ।

ଗାଗାରିନ୍—ତୁମେ ଯେ ରସାୟନ ଶାସ୍ତ୍ର ସଙ୍ଗେ ଦର୍ଶନର ଗୂଢ଼ ତତ୍ତ୍ୱ ଆଲୋଚନା କରିବାକୁ ବାହାରିଛ, ଇଜା । ବୃଦ୍ଧି ଓ କ୍ଷୟ ହେଉଛି ଜୀବନର ଲକ୍ଷଣ । ଆମେ ଚିରଜୀବୀ ହେବାକୁ ଚାହୁଁ ନାହୁଁ । ହିଁ ଜୀବନ୍ତ, ଜାଗ୍ରତ, କର୍ମମୟ ଜୀବନର ସନ୍ଧ୍ୟା ଯେତେ ଦୂର ଦୂରେଇଯାଏ, ଯୌବନଠାରୁ ଜରା ଯେତେ ଦୂରରେ ରହେ, ସେତିକି ମଙ୍ଗଳ ଆମେ କାମନା

କରୁଁ । କିନ୍ତୁ କର୍ମହୀନ, ଆକାଙ୍କ୍ଷାହୀନ ଜୀବନ ନେଇ ଚିରଜୀବୀ ହେବା ଆମ ଭଳି ମନୁଷ୍ୟର କାମ୍ୟ ନୁହେଁ, ଅର୍ଯ୍ୟମା ।

ସନାତନ—ନା, ନା, ଏଠାରେ ଜୀବନଧାରଣ ପାଇଁ ଅମ୍ଳଜାନ ଦରକାର ହେବ ନାହିଁ । ସତ୍ୟ ଓ ଧର୍ମ ଅମ୍ଳଜାନଠାରୁ ଜୀବନଧାରଣ ପାଇଁ ଅଧିକ ପ୍ରୟୋଜନ । ଆଶାକରେଁ ବାସ୍ତବ ଜୀବନର ସେହି ଦୁଇଟି ପ୍ରଧାନ ଉପାଦାନ ଅଛି ତୁମ ଜୀବନରେ । ସେହି ଦୁଇ ଉପାଦାନ ଥିଲେ, ତୁମେ ଏଠାରେ ଚିରଜୀବୀ ହୋଇ ରହି ପାରିବ ।

ଭେଲେଣ୍ଟିନା—ହଁଜୀ, ଆମର ପିତାମହଙ୍କ ଭଳି ପରମାର୍ଥିକ ଉପଦେଶ ଦେଉଛନ୍ତି ତୁମେ । ସେହି ଉପଦେଶ ପାଇଁ ତୁମକୁ ବିଶେଷ ଧନ୍ୟବାଦ । ଆମେ ଯେଉଁ ଦେଶରୁ ଆସିଛୁଁ, ସେ ଦେଶରୁ ଧର୍ମକୁ ଆନୁଷ୍ଠାନିକ ଭାବରେ ନିର୍ବାସିତ କରାଯାଇଛି । ତେବେ ସତ୍ୟ ଓ ସାଧୁତାର ମୂଲ୍ୟ ସେଠାରେ ଅତି ଉଚ୍ଚରେ ।

ଅର୍ଯ୍ୟମା—ଆଚ୍ଛା, ଗୋଟିଏ ପ୍ରଶ୍ନର ଉତ୍ତର ଦିଅ । ନରମାନଙ୍କ ପକ୍ଷରେ ସଶରୀରରେ ଚନ୍ଦ୍ରଲୋକକୁ ଆସିବା ଅସମ୍ଭବ । ପୂର୍ବକାଳରେ ଭାରତବର୍ଷର ମହାରାଜା ଯୁଧିଷ୍ଠିର ଜୀବନ-ସାରା ସତ କଥା କହିଥିବାରୁ ସଦେହରେ ସ୍ୱର୍ଗକୁ ଯାଇ ପାରିଥିଲେ, ତାଙ୍କ ସାଙ୍ଗରେ ଗୋଟିଏ କୁକୁର ବି ଯାଇ-ଥିଲା । ତୁମେମାନେ କେଉଁ ପୁଣ୍ୟବଳରେ ଏବେ ସଶରୀରରେ ଚନ୍ଦ୍ରଲୋକକୁ ଆସି ପାରିଲ ?

ଗାଗାରିନ୍—ଆମେ ଆସିଛୁ—ପୁଣ୍ୟବଳରେ ନୁହେଁ ବିଜ୍ଞାନର ବଳରେ—ସାହସର ବଳରେ, ଜୀବନକୁ ପଣ କରି।

ଭେଲେଣ୍ଟିନା—ଓଃ ଗାଗାରିନ୍, ଆମେ କି ଭୁଲଟାଏ କରିଥାଇଁ ଆମର ପ୍ରିୟ କୁକୁରର ଲାଇକାକୁ ସଙ୍ଗରେ ନ ଆଣି। ଏମାନେ ଠିକ୍ କହୁଛନ୍ତି—ସ୍ୱର୍ଗକୁ ଗଲେ ମଧ୍ୟ କୁକୁରକୁ ସଙ୍ଗରେ ନେଇଯିବା ଉଚିତ। ଆମେ ଏଠାକୁ ଆସିଛୁ—ଲାଇକାକୁ ଭୂଲୋକର ବିମାନଘାଟିରେ ଛାଡ଼ି ଦେଇ। ଆମର ଏଠାରେ ସଫଳ ଅବତରଣର ବାର୍ତ୍ତା ରୁଷିଆର ପ୍ରଧାନମନ୍ତ୍ରୀଙ୍କ ପାଖକୁ ପଠାଇଲାବେଳେ ଲାଇକା ବିଷୟରେ ଯେପରି ପ୍ରଥମରୁ ଖବର ବାର୍ତ୍ତା ପଠାଇବ।

ଗାଗାରିନ୍—ଓଃ, ହଁ। ଆଚ୍ଛା, ଶୁଣ, ଅସୀମା ଏଜା। ପୃଥିବୀରେ ରୁଷିଆ ବୋଲି ଗୋଟିଏ ଦେଶ ଅଛି। ସେଠାରେ ବିଜ୍ଞାନର ଅଗ୍ରଗତି ଯୋଗୁଁ ଆମେ ପୃଥିବୀରୁ ଚନ୍ଦ୍ର, ଶୁକ୍ର, ମଙ୍ଗଳ, ବୃହସ୍ପତି ଆଦି ଗ୍ରହମାନଙ୍କୁ ଯାତ୍ରା କରିବାକୁ ଯୋଜନା କରିଛୁ। ଆଜି ତହିଁର ପ୍ରଥମ ସୋପାନ ରୂପେ ଆମେ ଦୁହେଁ ଏଠାରେ ନିରାପଦରେ ଅବତରଣ କରିପାରିଛୁ। ଆମର ଦେଶ ଅନୁନ୍ନତକର୍ମୀମାନଙ୍କର ଦେଶ, ଏଜା। ସେଠାରେ ସାମ୍ୟବାଦର ପୂର୍ଣ୍ଣ ପ୍ରତିଷ୍ଠା। ଧନୀ, ଦରିଦ୍ର, ରାଜା, ପ୍ରଜା କୌଣସି ଭେଦାଭେଦ ନାହିଁ। ସମସ୍ତେ ଖଟି ଖାଆନ୍ତି।

ସନାତନ—ସମସ୍ତେ ଖଟି ଖାଇଲେ, ଆଉ ଚିନ୍ତା କରିବା ପାଇଁ ସମୟ ମିଳେ କେତେବେଳେ ସାଥି?

ଭେଲେଣ୍ଟିନା—ହଁ, ସେଇଟା ଆମ ଦେଶର ବିଶେଷତ୍ୱ । କର୍ମ ଓ ଜ୍ଞାନର ସମନ୍ୱୟର ଉତ୍କର୍ଷ ଦେଖିବ ରୁଷିଆରେ । ସେଥିପାଇଁ ଆଜ ପୃଥିବୀ ମଧ୍ୟରେ ରୁଷିଆ ହେଉଛି ଅଗ୍ରଗଣ୍ୟ । ଜୀବନ ସଂଗ୍ରାମରେ ରୁଷିଆ ହେଉଛି ସର୍ବ ପ୍ରଥମ ।

ସନାତନ—ଆତ୍ମ ପରିଚୟ ନିଜ ମୁହଁରେ ଆତ୍ମଶ୍ଳାଘା ରୂପେ ପ୍ରକଟିତ ହେଲେ ଭଲ ଶୁଭେ ନାହିଁ ନାତୁଣୀ । ତଥାପି ତୁମର ସାହସର ପ୍ରଶଂସା ନ କରି ମୁଁ ରହିପାରୁ ନାହିଁ । କିନ୍ତୁ ଚନ୍ଦ୍ରଲୋକକୁ ଆସି ତୁମେ କଣ କରିବାର ସ୍ଥିର କରିଛ ?

ଗାଗାରିନ୍—ଚନ୍ଦ୍ରଲୋକରେ ଉପନିବେଶ ସ୍ଥାପନ କରିବାର ଏକ ସପ୍ତବାର୍ଷିକୀ ଯୋଜନା ଅଛି ଆମର…

( ଏହି ସମୟରେ ଆଉ ଥରେ ଉଡ଼ାଜାହାଜ ଆସି ପହଞ୍ଚିଥିବାର ଶବ୍ଦ ହେଲା । ଘର୍ଘର ଶବ୍ଦରେ ଗାଗାରିନ୍ ଓ ଅନ୍ୟାନ୍ୟମାନଙ୍କର କଥାବାର୍ତ୍ତା ଶୁଣାଗଲା ନାହିଁ ।

କିଛି ସମୟ ପରେ ଅନ୍ୟ ଦିଗରୁ ପ୍ରବେଶ କଲେ ଦୁଇ ଜଣ ମହାକାଶ ଯାତ୍ରୀ—ବିଚିତ୍ର ବେଶଭୂଷାରେ ଭୂଷିତ । ସେମାନଙ୍କର ସ୍ୱରରେ କ୍ଳାନ୍ତି ଓ ଅବସାଦର ସୂଚନା ସ୍ପଷ୍ଟ । )

ପ୍ରଥମା—ଓଃ ପ୍ରିୟତମ କୁପର୍ । ରୁଷିଆ ଲୋକଙ୍କ ଆଗରୁ ଆମେ ଚନ୍ଦ୍ରଲୋକରେ ପହଞ୍ଚି ପାରିଲୁ ନାହିଁ । ଏହି ଖେଦ ସଙ୍ଗରେ ତୁମେ ଓ ମୁଁ ଏଠାରେ ନିବିପଦରେ ଅବତରଣ

କରିଥିବାର ଆନନ୍ଦ ମିଳିଯାଉଛି । ଆମେ ଦେଖିବା ରୁଷିଆର ଦୁଇ ଜଣ ଲୋକ କେଉଁଠି ରହୁଛନ୍ତି ।

କୁପର—ପ୍ରିୟତମା, କିଛି ଚିନ୍ତା କର ନାହିଁ । ଆମେ ଅତି ଅଳ୍ପ ସମୟ ମଧ୍ୟରେ ସେମାନଙ୍କୁ ଚିହ୍ନିପାରିବା ।

( ଗୃହଆଡ଼େ ଆଖି ବୁଲାଇଲେ । ହଠାତ୍ ରୁଷିଆର ଜାତୀୟ ପତାକାରେ ଦୃଷ୍ଟି ପଡ଼ିବାରୁ )

ଓଃ ଏଇ ଯେ ରୁଷିଆର ଜାତୀୟ ପତାକା । ଆଜ ଏଇଠି ଦୁଇ ଜଣ ରୁଷିଆର ମହାକାଶଯାତ୍ରୀ ।

ହେଲ୍ଲୋ ଭେଲେଣ୍ଟିନା, ହେଲ୍ଲୋ ଗାଗାରିନ୍ ସୁପ୍ରଭାତ । ଚନ୍ଦ୍ରଲୋକର ପ୍ରଥମ ବାଟୋଇ ରୂପେ ମୁଁ ତୁମ୍ଭମାନଙ୍କୁ ଅଭିନନ୍ଦନ ଜଣାଉଛି । ଇଏ ହେଉଛନ୍ତି ମୋର ସ୍ତ୍ରୀ ଶ୍ରୀମତୀ କୁପର୍ ।

( ଗୃହ ଜଣଯାକ ପରସ୍ପର କରମର୍ଦ୍ଦନ କଲେ ଓ ପରସ୍ପରକୁ ଅଭିବାଦନ ଜଣାଇଲେ । )

ଶ୍ରୀମତୀ କୁପର—ଆମ ପାଖରେ ଦୁଇ ଜଣ ଅପରିଚିତ ଭଦ୍ରଲୋକ ?

ଗାଗାରିନ୍—ମୁଁ ସେମାନଙ୍କୁ ପରିଚିତ କରାଇଦେବି । ଇଏ ହେଉଛନ୍ତି ମିଷ୍ଟର ଅର୍ଯ୍ୟମା, ଆଉ ଇଏ ହେଉଛନ୍ତି ମିଷ୍ଟର ସନାତନ ।

ଶ୍ରୀମତୀ କୁପର—( ସେମାନଙ୍କର କରମର୍ଦ୍ଦନ କରି ) ମିଷ୍ଟର ହାରିମାନ ଆପଣଙ୍କର ଦାଢ଼ି ନ ଥିଲେ ଠିକ ଆମର ଯୁକ୍ତ-ରାଷ୍ଟ୍ରର ମନ୍ତ୍ରୀ ଶ୍ରୀ ହାରିମାନଙ୍କ ଭଳି ଦେଖାଯାନ୍ତେ । ମୋର

ସ୍ୱାମୀ ମେକର କୁପରଙ୍କ ଆପଣଙ୍କର ପରିଚୟ କରାଇ ଦିଏ ।

( ଶ୍ରୀ କୁପରଙ୍କ ସହିତ ଅର୍ଯ୍ୟମା ସନାତନ କରମର୍ଦ୍ଦନ କଲେ )

ଶ୍ରୀମତୀ କୁପର—ଯାହାହେଉ ଆଶ୍ଚର୍ଯ୍ୟର କଥା ଯେ ରୁଷିଆର ଗାଗାରିନ୍ ଓ ଶ୍ରୀମତୀ ଭେଲେଣ୍ଟିନା ଚନ୍ଦ୍ରଲୋକର ପ୍ରଥମ ବିଜୟୀ ନୁହନ୍ତି । ଆମରି ଦେଶର ମନ୍ତ୍ରୀଙ୍କର ପୂର୍ବପୁରୁଷ କେଉଁଣ ବହୁକାଳ ପୂର୍ବେ ଚନ୍ଦ୍ରଲୋକରେ ବସତି ସ୍ଥାପନ କରିଛନ୍ତି । ବସ୍ତୁତଃ କେନେଡ଼ି ଓ ଯୁକ୍ତରାଷ୍ଟ୍ରର ଲୋକେ ପରେ ଏ କଥା ଜାଣନ୍ତି···

ଭେଲେଣ୍ଟିନା—କିନ୍ତୁ ଅର୍ଯ୍ୟମା ଅଜା ଯୁକ୍ତରାଷ୍ଟ୍ରର ନାଗରିକ ନୁହନ୍ତି ବା ନ ଥିଲେ···

ଶ୍ରୀମତୀ କୁପର—ସେଥିରେ କିଛି ଯାଏ ଆସେ ନାହିଁ । ସେ ଆମର ଆତ୍ମୀୟ ଲୋକ ।

ଅର୍ଯ୍ୟମା—ମୁଁ ସମସ୍ତଙ୍କର ଆତ୍ମୀୟ, ନାତୁଣୀ । ଶ୍ରୀମତୀ କୁପର, ମୁଁ ତୁମକୁ ଯଦି ନାତୁଣୀ ବୋଲି ଡାକେଁ, ତେବେ ତୁମେ କିଛି ମନେ କରିବ ନାହିଁ ତ ?

ଶ୍ରୀମତୀ କୁପର—ଓଃ ଅଜା ! ତୁମେ ଏତେ କାଏଦା-ଦୋରସ୍ତ ହେଲେ ଆମେ ଚଳି ପାରିବୁଁ ନାହିଁ । ତୁମେ ବାସ୍ତବିକ ମୋର ପିତାମହଙ୍କ ପରି ଦେଖାଯାଉଛ । ତୁମକୁ ଅଜା ଡାକିବାକୁ ମୁଁ ଗର୍ବ ଅନୁଭବ କରୁଛି ।

ଅର୍ଯ୍ୟମା—ଏବେ ଭେଲେଣ୍ଟିନା ନାତୁଣୀ ମଧ୍ୟ ସେହି କଥା କହୁଥିଲା । ବାସ୍ତବିକ ତୁମେ ସମସ୍ତେ ମୋର ନାତି ନାତୁଣୀ । ଏକ

ମାତା ପିତାଙ୍କର ବଂଶଧର ତୁମେ ସମସ୍ତେ ସମାନ। ତେଣୁ ତୁମ ମଧ୍ୟରେ ଏ ପ୍ରକାର ଈର୍ଷା ପୁଥିବାଠାରୁ ବହୁ ଦୂରରେ; ପୃଥିବୀର ବହୁ ଊର୍ଦ୍ଧ୍ୱରେ ଏତେ ପ୍ରକାଶ୍ୟ ଭାବରେ ଦେଖାଦେବା ଉଚିତ ନୁହେଁ।

ଭେଲେଂଟିନା—ହଁ ଅଜା, ମୁଁ ମଧ୍ୟ ସେହି କଥା କହେ। ରୁଷିଆ ସବୁଦିନ ସାମ୍ୟବାଦର ପକ୍ଷପାତୀ। ଆମେ ସମସ୍ତଙ୍କୁ ସମାନ ଆଖିରେ ଦେଖିବାକୁ ପସନ୍ଦ କରୁ।

ଶ୍ରୀମତୀ କୁପର—କିନ୍ତୁ ଅଜା, ଆମର ସାଥୀମାନଙ୍କ ଉତ୍ତର—ସେସବୁ ଲୋକଙ୍କୁ ସମାନ ବୋଲି ସ୍ୱୀକାର କରନ୍ତି। କିନ୍ତୁ ରୁଷିଆବାସୀଙ୍କ ସଙ୍ଗେ ଆମେରିକାବାସୀ ସମାନ ବୋଲି ସ୍ୱୀକାର କରିବାକୁ ସାଥୀ ଗାଗାରିନ ବା ସାଥୀ ଭେଲେଂଟିନା ପ୍ରସ୍ତୁତ କି?

ଭେଲେଂଟିନା—ଓଃ, ଶ୍ରୀମତୀ କୁପର ସାମ୍ୟବାଦର ବିକୃତ ସଂଜ୍ଞା କରୁଛନ୍ତି। ପୁଂଜିବାଦୀମାନେ ସର୍ବହରାଙ୍କ ସହିତ ସମାନ ହେଲେ, ସାମ୍ୟବାଦର ଅର୍ଥ କଣ ରହିଲା? ଗୋଟିଏ ମେଣ୍ଢାଛୁଆକୁ ଗୋଟିଏ ଗଧିଆ ସହିତ ସମାନ କରିବାକୁ ଚାହାନ୍ତି ଶ୍ରୀମତୀ କୁପର। କିନ୍ତୁ ରୁଷିଆ ଚାହେଁ ସାମ୍ୟ, ସାମ୍ୟ ସଙ୍ଗେ ଶୋଷଣହୀନ ସମାଜ।

ଶ୍ରୀମତୀ କୁପର—ମନୁଷ୍ୟ ଓ ମନୁଷ୍ୟ ମଧ୍ୟରେ ଯଦି ଆବେଗ ଓ ଆବେଗରେ ପଡ଼ି ଶୋଷକ ଓ ଶୋଷିତ ଶ୍ରେଣୀରେ ବିଭକ୍ତ କରାଯାଏ, ତେବେ ସମାନତା ଆଶା କରିବା ବୃଥା।

ଦୁଇ ଓ ତିନି ମିଶି ଯଦି ପାଞ୍ଚ ହୁଏ, ତେବେ ପାଞ୍ଚ ମଧ୍ୟ ଦୁଇ ଓ ତିନିର ସମଷ୍ଟି ସଙ୍ଗେ ସମାନ ହେବା ଉଚିତ ।

ଆମର ଆମେରିକା ଯୁକ୍ତରାଷ୍ଟ୍ରର କଥା ଦେଖନ୍ତୁ । ସେଠାରେ ଧନୀ, ଦରିଦ୍ର, ପୁଂଜିପତି, ସର୍ବହରା—ସମସ୍ତଙ୍କ ପାଇଁ ସମାନ ସୁଯୋଗ ରହିଛି । ଗଣତାନ୍ତ୍ରିକ ପଦ୍ଧତିରେ ସମସ୍ତଙ୍କର ସମାନ ଭୋଟ ଅଧିକାର ରହିଛି । ସେହି ଅଧିକାର ବଳରେ ପ୍ରତି ଚାରି ବର୍ଷରେ ସେଠାର ଲୋକେ ଦେଶର ଶାସନ ପରିଚାଳନା କରିବା ପାଇଁ ପ୍ରତିନିଧି ନିର୍ବାଚନ କରୁଛନ୍ତି । ଏବେ କହ ଅଜା, ପ୍ରକୃତ ସମତା କେଉଁଠି— ଯୁକ୍ତରାଷ୍ଟ୍ରରେ ନା ରୁଷିଆରେ ।

ଭେରେଲେଣ୍ଟିନା—ଚାରି ବର୍ଷରେ ଥରେ ଭୋଟ ଅଧିକାର ଦେଇ ଭୋଟ ସରିଗଲା ପରେ ଗରିବ ମଜଲୁମମାନଙ୍କ ଦୁଃଖ ଯେଉଁ ଦେଶରେ ବୁଝା ନଯାଏ, ସେଠାରେ ପୁଣି ସମତା ଆସିବ କିପରି ? ଆମେରିକାରେ ଚାରି ବର୍ଷରେ ଥରେ ଦୁଇ ଓ ତିନି ମିଶି ପାଞ୍ଚ ହୁଏ । ଅଜା, ତୁମେ କହ ଆମେରିକା ଭଲ ନା ରୁଷିଆ ଭଲ ।

ଶ୍ରୀମତୀ କୁପର—କାହିଁ ରାମଚନ୍ଦ୍ର ମହାପ୍ରଭୁ, ଆଉ କାହିଁ ରମିଆ ଭଣ୍ଡାରି । ପୃଥିବୀର ସବୁଠାରୁ ଧନୀ, ସବୁଠାରୁ ସୁଖୀ ଦେଶ ଯୁକ୍ତରାଷ୍ଟ୍ର, ତା ସଙ୍ଗରେ ପୁଣି ବୁଭୁକ୍ଷୁ ରୁଷିଆ ଦେଶର ତୁଳନା ?

ଭେରେଲେଣ୍ଟିନା—କେବଳ ଧନର ଗର୍ବରେ ଗର୍ବିତ ଯୁକ୍ତରାଷ୍ଟ୍ର —ଧନଛଡ଼ା ଗର୍ବ କରିବାର ଆଉ କଣ ଅଛି ସେଠାରେ ?

ସେଇ ଧନ ପୁଣି କେତେ ସାମାନ୍ୟ କୋଟିପତିଙ୍କ ହାତରେ । ନା, ଅଙ୍କଲ, ପୃଥିବୀର ସର୍ବଶ୍ରେଷ୍ଠ ଦେଶ ହେଉଛି ରୁଷିଆ । ଦେଖିଲ ତ, ଆମର ବୁଦ୍ଧି, ଆମର ସାହସ ବଳରେ ଆମେ ପ୍ରଥମରୁ ଚନ୍ଦ୍ରଲୋକରେ ପହଞ୍ଚିଥାଇଁ ।

ଶ୍ରୀମତୀ କୁପର—ହଁ ଅଙ୍କଲ, ଆଜି ଆମେ ତୁମର ମତ ଏ ବିଷୟରେ ଜାଣିବାକୁ ଚାହୁଁ । ଆଉ ସେଇ କଥା ପୃଥିବୀ ସାରା ପ୍ରଚାର କରିବାକୁ ଚାହୁଁ । ତୁମ ଦୁହିଙ୍କ ମତଦ୍ୱାରା ଆଜି ହୁଏ ତ ଏକ ଅତି କଠିନ ଆନ୍ତର୍ଜାତିକ ସମସ୍ୟାର ସମାଧାନ ହୋଇଯାଇପାରେ । ବହୁବର୍ଷ ଧରି ପୃଥିବୀର ପ୍ରତ୍ୟେକ ଲୋକର ମନରେ ଏକ ଦ୍ୱନ୍ଦ୍ୱ ଜାଗ୍ରତ ହୋଇଛି —ଆମେରିକା ଓ ରୁଷିଆ—ଏ ଦୁଇ ଦେଶ ମଧ୍ୟରେ ବଡ଼ କିଏ ? ଆଣବିକ ଅସ୍ତ୍ର, ଆଣବିକ ଅସ୍ତ୍ର, ବିଜ୍ଞାନ, ଧନାର୍ଜନ —ସବୁଥିରେ ଉଭୟ ଦେଶ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଚାଲି ଆସିଛି—ଏଇ ଗୋଟିଏ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ପାଇବା ପାଇଁ । ଆଜି ତୁମେ ଦୁଇଜଣ ଅଙ୍କଲ ପୃଥିବୀଠାରୁ ବହୁ ଦୂରରେ, ବହୁଊର୍ଦ୍ଧ୍ୱରେ ରହିଛ । ନିରପେକ୍ଷ ଦୃଷ୍ଟିକୋଣ ସହିତ ଏ ସମସ୍ୟାର ସମାଧାନ ତୁମ ପକ୍ଷରେ ସମ୍ଭବ ହେବ । ଏଣୁ ଏଇ ସମସ୍ୟାର ନିରପେକ୍ଷ ସମାଧାନ ତୁମ ଦୁଇ ଜଣଙ୍କ ଉପରେ ଆମେ ଛାଡ଼ି ଦେଉଛୁ । ତୁମର ସମାଧାନରେ ପୃଥିବୀରେ ସ୍ଥାୟୀ ଶାନ୍ତି ଆସିପାରେ ।

ଅର୍ଫିମା—ଓଃ, ମୁଁ ଦେଖୁଛି, ତୁମେମାନେ ଆମକୁ ଶାନ୍ତିରେ ରଖିଦେବ ନାହିଁ । ପୃଥିବୀର ଶୀତଳ ସମରରେ ଚନ୍ଦ୍ରଲୋକକୁ ପ୍ରଭାବିତ କରିବାକୁ ଚାହୁଁ ତୁମେମାନେ ।

ଭେଲେଣ୍ଟିନା—ଶୀତଳ କାରଣ ଚନ୍ଦ୍ରଙ୍କର ରାଜ୍ୟରେ ଶୀତଳ ସମରର ସମାଧାନ ନ ହେଲେ, ଜନ୍ମଭୂମି ପୃଥିବୀର ଅତିଶୀଘ୍ର କେବେ ଆମେରିକା ଓ ରୁଷିଆ ମଧ୍ୟରେ ଯଦି ତୃତୀୟ ଯୁଦ୍ଧ ଆରମ୍ଭ ହୋଇଯାଏ, ତେବେ ତାହା ଫଳରେ ସମଗ୍ର ପୃଥିବୀ ଧ୍ୱଂସ ପାଇଯିବାର ସମ୍ଭାବନା ଅଛି ।

ସନାତନ—ଆଚ୍ଛା, ଆମର ନିଷ୍ପତ୍ତିକୁ ତୁମେ ମାନିନେଇ ପୃଥିବୀକୁ ସେଇ ବାର୍ତ୍ତା ପଠାଇବାକୁ ଚାହୁଁ ଚବ ?

ଅର୍ଫିମା—ଏଇ ପ୍ରସ୍ତାବରେ ମୁଁ ଅଶାନ୍ତି ଓ ପ୍ରବଳ ସଂଘର୍ଷର ବୀଜ ଦେଖୁଛି, ସନାତନ । ମୁଁ ଏଇ କଥାରେ ବହୁ ପୂର୍ବେ କଣ କହିଥିଲି । ଚନ୍ଦ୍ରଲୋକକୁ ମନୁଷ୍ୟର ଆଗମନ ସଙ୍ଗେ ସଙ୍ଗେ ଏ ଲୋକରେ ମଧ୍ୟ ଈର୍ଷ୍ୟା, ଦ୍ୱେଷ, ହିଂସା, ଅଶାନ୍ତି ଆଦି ନାରକୀୟ ପ୍ରବୃତ୍ତିରେ ପ୍ରଭାବିତ ହେବାର ସମ୍ଭାବନା ରହୁଛି । ତେଣୁ ଆମେ ଏ ବିବାଦରୁ ଯେତେଦୂରରେ ରହିପାରିବା ସେତେ ଭଲ । ତେଣୁ ଶ୍ରୀମତୀ କୁପର୍ ଓ ସାଥୀ ଭେଲେଣ୍ଟିନା, ତୁମର ସମାଧାନ ଆମ ଉପରେ ଛାଡ଼ି ନ ଦେଇ, ତୁମର ମଧ୍ୟରେ ଆପୋଷରେ ସମାଧାନ କରିନେବା ଭଲ ହେବ ।

ଶ୍ରୀମତୀ କୁପର—କିନ୍ତୁ ଅଜା, ଆମେ ତୁମ ଉପରେ ବହୁତ ଆଶା ରଖିଥିଲୁଁ ।

ଭେଲେଣ୍ଟିନା—ହଁ ଅଜା, ତୁମେମାନେ ଟିକିଏ ସାହସ ଦେଖାଇ ସ୍ପଷ୍ଟ ମତ ଦେଲେ ଏକ ଗୁରୁତର ସମସ୍ୟାର ସମାଧାନ ହୋଇଯିବ ।

ଅଙ୍ଗିମା—ଆମର ସମାଧାନ, ତୁମର ମନକୁ ପାଇବ ନାହିଁ, ନାତୁଣୀମାନେ ! ତୁମେ ସମସ୍ତେ ଆମର ବଂଶଧର । ଆଦି ମାନବମାନବୀ ଆଦାମ ଓ ଇଭର ରକ୍ତ ଯେତିକି ଭେଲେଣ୍ଟିନା ଦେହରେ ଅଛି, ସେତିକି ଶ୍ରୀମତୀ କୁପର ଦେହରେ ମଧ୍ୟ ଅଛି । ଯଦି ନାତୁଣୀ ଭେଲେଣ୍ଟିନା ଆମେରିକାରେ ଜନ୍ମିଥାନ୍ତା, ତେବେ ସେ ଆମେରିକାକୁ ବଡ଼ ବୋଲି କହନ୍ତା, କୁପରେ ଯଦି ରୁଷିଆରେ ଜନ୍ମିଥାନ୍ତା ତେବେ ସେ କହନ୍ତା, ରୁଷିଆ ବଡ଼ ? କିନ୍ତୁ ବଡ଼ କିଏ ? ଯେ ବଡ଼ପଣିଆ, ସେ ହିଁ ବଡ଼ । ଯେ ପରର ଗୁଣ ଓ ନିଜର ଦୋଷ ଦେଖିପାରେ ସେ ହିଁ ବଡ଼ । ସେହି ଦୃଷ୍ଟିରୁ ଦେଖିବାକୁ ଗଲେ ତୁମର ଉଭୟ ଦେଶ ସମାନ । ଉଭୟ ଦେଶ ଯଦି ବାସ୍ତବିକ ଶାନ୍ତି ଚାହିଁ, ତେବେ ଉଭୟ ଦେଶ ବଡ଼ ହେବ । କିନ୍ତୁ ଉଭୟ ଦେଶ ଯଦି ବଡ଼ିମା ଦେଖାଇବାକୁ ଚାହିଁ, ତେବେ ଉଭୟ ଦେଶ ରସାତଳକୁ ଯିବ ।

ଭେଲେଣ୍ଟିନା<br>ଗାଗାରିନ୍ } ( କରତାଳି ଦେଇ ) ଓଃ ଅଜା, ତୁମେ ବଣପ ଭଲଆ କଥା କହୁନ୍ତୁ ।

କୁପର<br>ଶ୍ରୀମତୀ କୁପର } ( କରତାଳି ଦେଇ ) ତୁମର ଉପଦେଶରେ ସମାଧାନ କଣ୍ଟୁ ନାହିଁ । ପୃଥିବୀର ସମସ୍ୟା ଚନ୍ଦ୍ରରେ ମଧ୍ୟ ସମାଧାନ ହେଲା ନାହିଁ ।



# ଆରୁଣିର ସ୍ୱପ୍ନ

(ଅତି ପ୍ରାଚୀନ କାଳରେ ମୁନି ଆୟୋଦ ଧୌମ୍ୟଙ୍କର ଆଶ୍ରମର ଏକ ଦୃଶ୍ୟ । ଏକ ପର୍ଣ୍ଣକୁଟୀରର ମଧ୍ୟଭାଗରେ ଏକ କାଷ୍ଠ ଶଯ୍ୟାରେ ଶୟାନ ଏକ ଅଜାତଶ୍ମଶ୍ରୁ ମୁନିକୁମାର । ତାଙ୍କର ଆକଣ୍ଠ ସମଗ୍ର ଶରୀର ଶୀତବସ୍ତ୍ରରେ ଆବୃତ । ମୁଖରୁ ମଝିମଝିରେ ଅସ୍ପଷ୍ଟ ସ୍ୱର ଅସ୍ଫୁଟ ଶବ୍ଦ ବାହାରୁଛି । ପାଖରେ ତାଙ୍କର ସମବୟସ୍କ ଦୁଇ ଜଣ ମୁନିକୁମାର ଠିଆ ହୋଇଛନ୍ତି । ପ୍ରବେଶ କରିଲେ ଶୁକ୍ଳକେଶ ଶୁକ୍ଳଶ୍ମଶ୍ରୁ କୁଳପତି ଧୌମ୍ୟ, ହାତରେ ଏକ ମୃତ୍‌ପାତ୍ରରେ ଔଷଧ ଧରି । ସମସ୍ତଙ୍କ ଦେହରେ ଗୈରିକ ବସ୍ତ୍ର ।)

ମୁନି—(ରୋଗୀ ମୁନିକୁମାରଙ୍କ ନାଡ଼ି ଦେଖି ଓ ଉଠାଇବାର ଚେଷ୍ଟା କରି) ଆରୁଣି ! ପ୍ରିୟ ବତ୍ସ ଆରୁଣି ! ଓଃ, ନାଡ଼ି ଅଣ୍ଟର ବଳ୍‌ଗିତ ପରି ଖର ବେଗରେ ବହୁଛି । ଦେହରେ ଖଇଫୁଟା ତାତ । ଉପମନ୍ୟୁ, ଏ ମଧ୍ୟରେ ଆରୁଣିର ଚେତା ଫେରି ନାହିଁ ।

ଉପମନ୍ୟୁ—ନା, ଗୁରୁଦେବ, ମଝି ମଝିରେ ଅସ୍ଫୁଟ ଶବ୍ଦ କରିବା ଛଡ଼ା ଆରୁଣି ଏକେବାରେ ନିସ୍ପନ୍ଦ ଅବସ୍ଥାରେ ପଡ଼ିଛନ୍ତି । ଗୁରୁଦେବ, ଆପଣଙ୍କର ଆଦେଶ ମାନି ଆରୁଣି ଧାନ-କ୍ଷେତରେ ହିଡ଼ ବାନ୍ଧିବାକୁ ଯାଇଥିଲେ । କାମଟି ଏକା ନ ପାରିଥିଲେ ଆମକୁ ସାହାଯ୍ୟ ପାଇଁ ଡାକିଥାନ୍ତେ, ନ ହେଲେ ତାଙ୍କରେ ଆହୁରି ମାଟି ପକାଇବାର ଚେଷ୍ଟା କରିଥାନ୍ତେ । କିନ୍ତୁ ନିଜେ ବାହାଦୁରି ନେବା ପାଇଁ ଏକା ଯେଉଁ ହିଡ଼ ତା ଉପରେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଶୋଇ ରହିବା ଭଲ ହେଲା ନାହିଁ । ସେଇଥିପାଇଁ ଆଜି ଦୁଇ ଦିନ ହେଲା ସେ ଅଚେତନ ଅବସ୍ଥାରେ ପଡ଼ିଛନ୍ତି ।

ମୁନି—ବାହାଦୁରି ନୁହେଁ, ଉପମନ୍ୟୁ । ଏହା ହେଉଛି ଗୁରୁଭକ୍ତିର ପରାକାଷ୍ଠା । ଗୁରୁଙ୍କ ଆଦେଶ ଅକ୍ଷରେ ଅକ୍ଷରେ ପାଳନ କରି ଆରୁଣି ଅକ୍ଷୟ ଯଶ ଓ ମୋର ପୂର୍ଣ୍ଣ ଆଶୀର୍ବାଦ ଲାଭ କରିଛନ୍ତି । ତାର ବିଦ୍ୟା ସଫଳ ହେବ—ଏଇ ସାର୍ଥକ ଆଶୀର୍ବାଦ ଲାଭ କରିଛନ୍ତି ସେ ମୋଠାରୁ ।

ଉପମନ୍ୟୁ—କିନ୍ତୁ ସନ୍ନିପାତ ରୋଗରେ ଯଦି ସେ ଶମନ ସଦନର ଅତିଥି ହୁଅନ୍ତି ।

ମୁନି—ନା, ନା, ଆରୁଣି ମୋର ଆଶୀର୍ବାଦରେ ଚିରଞ୍ଜୀବୀ ହେବ । ଯମ ତାର କେଶାଗ୍ର ମଧ୍ୟ ସ୍ପର୍ଶ କରି ପାରିବ ନାହିଁ । ସଞ୍ଜୀବନୀ ମନ୍ତ୍ରପୂତ ଏଇ ଦନ୍ତମୂଳ ପାଚନ ତାକୁ ପ୍ରତି ପ୍ରହରରେ ଥରେ ଲେଖାଏଁ ପିଆଇବ । ଆଉ ଦେଖ ଉପମନ୍ୟୁ, ତୁମର ଶାରୀରିକ ସ୍ଥୂଳତା ମୋତେ ଚିନ୍ତିତ

କରିଛୁ । ତେଣୁ ତୁମେ ଏଠାରେ ଆଜି ରାତଯାକ ଅନିଦ୍ରା ରହି ଆରୁଣିର ଶୁଶ୍ରୂଷା କରିବ । ବେଦ, ତୁମେ ମଧ୍ୟ ଏଠାରେ ସନ୍ଧ୍ୟା ପର୍ଯ୍ୟନ୍ତ ରହିବ ।

ବେଦ—ଯଥା ଆଜ୍ଞା, ଗୁରୁଦେବ ।

ମୁନି—ଉପମନ୍ୟୁ ବଡ଼ ଭୋଜନ ପ୍ରିୟ, ତାର ପୀବରତା ଦୋଷ ଦୂର କରିବା ପାଇଁ ଖାଦ୍ୟ ସଂଯମ ବିଶେଷ ପ୍ରୟୋଜନ । ଜିହ୍ୱା ଲାଳସାରେ ପଡ଼ି ସେ ଯେପରି ଆରୁଣିର ପଥ୍ୟକୁ ଗଳାଧଃ-କରଣ ନ କରେ, ସେଥିପାଇଁ ସତର୍କ ଦୃଷ୍ଟି ଦେବ ତୁମେ ।

ବେଦ—ଯଥା ଆଜ୍ଞା, ଗୁରୁଦେବ ।

ମୁନି – ଆଜି ଆରୁଣିର ସ୍ୱାସ୍ଥ୍ୟରେ ଯଦି ଅଧିକ ବିପର୍ଯ୍ୟୟ ଦେଖାଯାଏ, ତେବେ ମୋତେ ଖବର ଦେବ । ଯାଏଁ, ସନ୍ଧ୍ୟା ଉପାସନାର ସମୟ ହେଲା ଆସି । ଅଶ୍ୱିନୀକୁମାର ଆରୁଣିକୁ ଦୀର୍ଘାୟୁ କରନ୍ତୁ । ( ପ୍ରସ୍ଥାନ )

ଉପମନ୍ୟୁ—(ଗୁରୁଙ୍କର ପ୍ରସ୍ଥାନ ମାର୍ଗକୁ ଚାହିଁ ବଦ୍ଲୁଡେଇ ସ୍ୱରରେ ବେଦଙ୍କର ସ୍ୱରକୁ ଅନୁକରଣ କରି ) ଯଥା ଆଜ୍ଞା, ଗୁରୁଦେବ । ସବୁ କଥାରେ ଯଥା ଆଜ୍ଞା ଗୁରୁଦେବ । ଏଇଟାକୁ କହନ୍ତି ଅତି ଭକ୍ତି ଚୋରର ଲକ୍ଷଣ । ବିଚରା ଆରୁଣି ଗୁରୁଙ୍କ କଥାରେ ଅତି କର୍ତ୍ତବ୍ୟପରାୟଣ ହେବାକୁ ଯାଇ ପୈତୃକ ପ୍ରାଣଟା ହରାଇବାକୁ ବସିଲାଣି । ମୁଁ ଗୁରୁଙ୍କ ଆଦେଶରେ ନିର୍ଜ୍ଜଳ ଉପବାସୀ । ପେଟରେ ତ ମୂଷାଙ୍କର ଧାବନ ପ୍ରତିଯୋଗିତା ଚାଲିଛି । ଆଜି ଚାହିଁ ଉପରେ ମୋ

ଆଚରଣର ପ୍ରହରୀ ତୁମେ । ଦେଖ ବେଦ, ବୁଭୁକ୍ଷା ଓ ପିପାସାରେ ଆତୁର ମୁହଁ, ବେଗୀ ଶୁଶ୍ରୂଷା କରିବାର ଶକ୍ତି ନାହିଁ ମୋର । ଆଜ କିଛି ତ ଏଠାରେ ଖାଦ୍ୟ ବା ପାନୀୟ ନାହିଁ । ଏହି ଦଶମୂଳ ପାଚନରେ ହିଁ କିଛିଏ ତୃଷା ନିବାରଣ କରେଁ ।

ବେଦ—ଭାଇ ଉପମନ୍ୟୁ, ବାତର ପ୍ରକୋପରେ ବାତୁଳ ହେବାକୁ ବସିଲଣି କି ? କିନ୍ତୁ ଦଶମୂଳ ଯେ ପିତ୍ତ ନିବାରକ । ଏହା ପାନ କଲେ ସ୍ୱାସ୍ଥ୍ୟହାନି ହୋଇପାରେ ।

ଉପମନ୍ୟୁ—( ରାଗିଯାଇ ) ସ୍ୱାସ୍ଥ୍ୟହାନି ? ସେଥିରେ ତୁମର କଣ ଯାଏ ଆସେ ? ବରଂ ଦେହ କୃଶ ହେଲେ ଗୁରୁଦେବ ଆପ୍ୟାୟିତ ହେବେ ।

( ଔଷଧ ପାତ୍ର ଧରି ପିଇବାକୁ ଉଦ୍ୟତ ହେଲେ )

ବେଦ—( ପାତ୍ର ଛଡ଼ାଇବାକୁ ଚେଷ୍ଟା କରି ) ହଁ, ହଁ, ରହ, ରହ ! କ'ଣ କରିବାକୁ ଯାଉଛ ତୁମେ ? ଯଦି ମୁଁ ଏ ବିଷୟରେ ଗୁରୁଦେବଙ୍କୁ କହି ଦିଏଁ ?

ଉପମନ୍ୟୁ—( ଉଚ୍ଚ ସ୍ୱରରେ ) ଯାଅ କହ, ଆଉ ଧୈର୍ଯ୍ୟ ନାହିଁ ମୋର ।

ବେଦ—ତୁମର ନାମ ଉପମନ୍ୟୁ ନ ହୋଇ ମନ୍ୟୁ ହୋଇଥିଲେ ଭଲ ହୋଇଥାନ୍ତା । କ୍ରୋଧର ଅବତାର ତୁମେ ।

ଉପମନ୍ୟୁ—( ଢୋକେ ଦୁଇ ଢୋକ ଔଷଧ ପିଇ, ମୁଖ ବିକୃତ କରି ) ନାଃ ପିଇ ହେବ ନାହିଁ ! ଥୁଃ, ଥୁଃ, କି ପିତା ଔଷଧ !

ବେଦ— ଔଷଧ ପିଇ କ'ଣ ତୃଷା ନିବାରଣ କରାଯାଇ ପାରେ ?

ଉପମନ୍ୟୁ—ତେବେ ଉପାୟ ? ଏ ଆଶ୍ରମରେ ଶୋକରେ ମରିବାକୁ ହେବ ମୋତେ । ନା ବେଦ, ଏ ଆଶ୍ରମରେ ଏ ଗୁରୁଙ୍କ ଶିଷ୍ୟ ହୋଇ ଚଳିବା ମୋ ପକ୍ଷରେ ଅସମ୍ଭବ, ଚାଲ ଦୁହେଁ ଘରକୁ ଫେରି ଯିବା, ନ ହେଲେ ଆମର ଦଶା ଆରୁଣି ପରି ହେବ ।

ବେଦ—ନା ଉପମନ୍ୟୁ, ଗୁରୁଦେବ ତୁମର ହିତ ପାଇଁ ଏ ଖାଦ୍ୟ ସଂଯମ ବ୍ୟବସ୍ଥା କରିଛନ୍ତି । ତୁମେ ଭୋଜନପ୍ରିୟ ହୋଇ ନିଦ୍ରାଳୁ ହେଉଛ । ଏପରି ହେଲେ ଅଧ୍ୟୟନରେ ବାଧା ହେଉଛି । ଅଧ୍ୟୟନ ଏକ ତପସ୍ୟା । ସଂଯମ ଓ ଶୃଙ୍ଖଳା ହେଉଛି ଏ ତପସ୍ୟାର ମୂଳ । ତାଙ୍କର ଆଦେଶ ପାଳନ ହିଁ ଆମର ପରମ କର୍ତ୍ତବ୍ୟ । ତାଙ୍କର ଆଦେଶ ଅକ୍ଷରେ ଅକ୍ଷରେ ପାଳନ କଲେ ଆମର ବିଦ୍ୟାର ସିଦ୍ଧି ହେବ ।

ଉପମନ୍ୟୁ—ମୁଁ ଦେଖୁଛି, ତୁମେ ଗୁରୁଙ୍କଠାରୁ ବଳି ଅଧିକ ଉପଦେଶ ପଣ୍ଡିତ । ତୁମକୁ ଯଦି ତିନି ଦିନ ତିନି ରାତି ଖାଇବାକୁ ଦିଆ ନ ଯାଏ, ତେବେ ଏ ଉପଦେଶ ପ୍ରବୃତ୍ତି ଥିବ ତ ସେତେବେଳେ ?

ବେଦ—ହଁ ଉପମନ୍ୟୁ, ଗୁରୁଙ୍କର ତପସ୍ୟା ଅଧ୍ୟୟନ । ସେଥିପାଇଁ ସମସ୍ତ କ୍ଳେଶ ସହିବାକୁ ହେବ ଆମକୁ । ବାଲ୍ମୀକି ତପସ୍ୟାରେ ଏତେଦୂର ତନ୍ମୟ ହୋଇଥିଲେ ଯେ ତାଙ୍କର ଶରୀର ବଲ୍ମୀକଦ୍ୱାରା ଆବୃତ ହୋଇଥିଲା । ସେଥିପାଇଁ ସେ ଏତେ ଉଚ୍ଚାଙ୍ଗ ମହାକାବ୍ୟ ରଚନା କରି ପାରିଥିଲେ ।

ପଞ୍ଚାଗ୍ନି ତପସ୍ୟାରେ ସିଦ୍ଧ ହୋଇଥିଲେ ବୋଲି ପାର୍ବତୀ ମୃତ୍ୟୁଞ୍ଜୟଙ୍କର ହୃଦୟ ଜୟ କରି ପାରିଥିଲେ । ବିଦ୍ୟାରେ ସିଦ୍ଧିଲାଭ ପାଇଁ ମଧ୍ୟ କଠୋର ସାଧନା ଦରକାର ।

ଉପମନ୍ୟୁ—ତୁମେ ଏ ସବୁ ବିଶ୍ୱାସ କର ବେଦ ?

ବେଦ—ତେବେ ଶାସ୍ତ୍ର, ପୁରାଣ ସବୁ କ'ଣ ମିଛ ?

ଉପମନ୍ୟୁ—କ୍ଷୁଧାରେ ସତ ମିଛ ବୁଝିବାର ପ୍ରବୃତ୍ତି କ୍ଷୀଣ ହୋଇଛି ବେଦ ! ଭିକ୍ଷାଲବ୍ଧ ଅନ୍ନ ଗୁରୁଙ୍କୁ ନିବେଦନ କଲା ପରେ ଦ୍ୱିତୀୟବାର ଭିକ୍ଷା କରି କ୍ଷୁଧା ନିବାରଣ କରୁଥିଲି । ଗୁରୁଦେବ ସହ୍ୟ ନ ପାରି ମୋତେ ତାହା ନିଷେଧ କଲେ । ଆଶ୍ରମ ଧେନୁମାନଙ୍କର କ୍ଷୀରରେ ତୃଷା ନିବାରଣ କରୁଥିଲି । ତାହା ମଧ୍ୟ ଗୁରୁ ସହ୍ୟ ପାରିଲେ ନାହିଁ । ଗୋବତ୍ସମାନଙ୍କର ମୁଖନିଃସୃତ ମାତୃକ୍ଷୀର ଫେନରେ କ୍ଷୁଧା ଶାନ୍ତ କରିବାକୁ ଚେଷ୍ଟା କଲି । ତାହା ମଧ୍ୟ ଚକ୍ଷୁଃଶୂଳ ହେଲା । ଏବେ କରେଁ କ'ଣ ?

ବେଦ—ଜିହ୍ୱା ସଂଯମ ବ୍ରହ୍ମଚର୍ଯ୍ୟର ପ୍ରଧାନ କର୍ତ୍ତବ୍ୟ । ଏହା ଏକ ଚରମ ପରୀକ୍ଷା । ଏ ପରୀକ୍ଷାରେ ତୁମକୁ ଉତ୍ତୀର୍ଣ୍ଣ ହେବାକୁ ପଡ଼ିବ ।

ଉପମନ୍ୟୁ—ମୁଁ ପାରିବି ନାହିଁ, ସଖା । ଆଜନ୍ମ ପ୍ରମାଣ ପାୟସାନ୍ନ ଉଦରସାତ୍ କରି ମାତାଙ୍କର ପ୍ରିୟପୁତ୍ର ଥିଲି ମୁହିଁ । ଶତ-ସଂଖ୍ୟକ ମୋଦକ ଏକ କାଳରେ ଉଦରସାତ୍ କରି ପିତାଙ୍କୁ ପ୍ରମୁଦିତ କରୁଥିଲି । ପିଷ୍ଟକ ଭକ୍ଷଣ ପ୍ରତି-ଯୋଗିତାରେ ଗ୍ରାମରେ ମୋର ସମକକ୍ଷ କେହି ନ ଥିଲେ ।

ଆଜ ଆଜ ଦେଖ ମୋର ଦୁର୍ଦ୍ଦଶା । ଅତ୍ରି ମୁନି ସପ୍ତ ସମୁଦ୍ରକୁ ଚକ୍ଷୁ କରି, ଆତାପି ବାତାପୀଙ୍କୁ ଜଠରାଗ୍ନିରେ ଭସ୍ମ କରି ମଧ୍ୟ ମୁନିମାନଙ୍କର ବନ୍ଦନୀୟ ଥିଲେ । ସେ ହେଉଛନ୍ତି ମୋର ଆଦର୍ଶ । କିନ୍ତୁ ଏ ଦେଶରେ ଅବସ୍ଥା ଆଜ ହୋଇଛି କ'ଣ ? କୁଳପତି ଗୁରୁଦେବ କୃପଣ···

ବେଦ—( ବାଧା ଦେଇ ) ଅସହ୍ୟ ତୁମର ଗୁରୁନିନ୍ଦା, ଉପମନ୍ୟୁ । ଦେଖ, ଆଜ ଯଦି କିଛି ଅଧିକ କହ, ତେବେ ତୁମର ଏ ସବୁ ଦୁଷ୍ଟଶିଷ ଗୁରୁଙ୍କୁ କହି ଦେବି । ଧୈର୍ଯ୍ୟ ଧର । ତୁମର ଏ ପୃଥୁଳତା ଦୂର ହୋଇ, ଶରୀରର ସୁଷମତା ଓ ମାନସିକ ଭାରସାମ୍ୟ ଆସିଲେ, ତୁମେ ହୁଏତ ଏକ ଆଦର୍ଶ ଶିଷ୍ୟ ହୋଇ ପାରିବ । ଏହି ତପସ୍ୟା ଯୋଗୁଁ ହୁଏତ ଦିନେ ସମସ୍ତ ଛାତ୍ରସମାଜରେ ପ୍ରାତଃସ୍ମରଣୀୟ ହୋଇ ପାରିବ ।

ଉପମନ୍ୟୁ—କିନ୍ତୁ ମୋର ଆଶଙ୍କା ହେଉଛି, ବେଦ ! ମୁଁ ଏ ଜିହ୍ୱା-ସଂଯମ ତପସ୍ୟାରେ ସଫଳ ହେବା ପୂର୍ବରୁ ଆରୁଣି ପରି ଜୀବନ ସଂଶୟରେ ପଡ଼ିଯିବି ।

ବେଦ—ନା, ନା, ଗୁରୁଙ୍କର ଆଶୀର୍ବାଦରୁ, ଭଗବାନଙ୍କର କୃପାରୁ ତୁମର ବିଦ୍ୟା ନିଶ୍ଚୟ ସିଦ୍ଧ ହେବ ।

ଉପମନ୍ୟୁ—ମୁଁ ଥରେ କଳ୍ପନା କରେଁ ବେଦ, ସ୍ୱପ୍ନ ଦେଖେଁ ସେଇ ଯୁଗର କଥା ଯେଉଁ ଯୁଗରେ ଶିଷ୍ୟ ହେବ ସ୍ୱାଧୀନ, ଗୁରୁଙ୍କର ସମକକ୍ଷ, ତଥାପି ଶାସ୍ତ୍ରରେ ଧୁରନ୍ଧର, ବୁଦ୍ଧିରେ

ତୀକ୍ଷ୍ଣ, ବିଦ୍ୟାରେ ପ୍ରବୀଣ । ସେଇଟା ହେବ ଏ ଦେଶରେ ଶିଷ୍ୟମାନଙ୍କର ସୁବର୍ଣ୍ଣ ଯୁଗ—

—ଯେଉଁ ଦିନ ଶିଷ୍ୟମାନେ ସମସ୍ତେ ସ୍ୱାଧୀନ ହେବେ । ଗୁରୁ ଶିଷ୍ୟଙ୍କୁ ଉପଦେଶ ଦେଲେ, ଶିଷ୍ୟମାନେ ମଧ୍ୟ ଗୁରୁଙ୍କୁ ପରାମର୍ଶ ଦେବେ ।

ବେଦ—( ଉପହାସ କରି ) ସେଇ ସ୍ୱାଧୀନତା ଚାହଁ ତୁମେ ଉପମନ୍ୟୁ ? କିନ୍ତୁ ତୁମର ମନ୍ୟୁର ପ୍ରକୋପ ଗୁରୁଦେବ ସଂଭାଳି ପାରିବେ ତ ସେ ଦିନ ?

ଉପମନ୍ୟୁ—ହଁ, ହଁ, ସହସ୍ର ସହସ୍ର ବର୍ଷ ଧରି ଏ ଦେଶରେ ଶିଷ୍ୟମାନେ ଅଭିଶପ୍ତ ଅନୁରକ୍ତି, ଅତି ଭକ୍ତି ଦେଖାଇ ଆସିଛନ୍ତି ଗୁରୁଙ୍କ ପ୍ରତି । ସେଥିପାଇଁ ଉତ୍ତମ ଶିଷ୍ୟମାନେ ବିଦ୍‌ବତ୍ତା ସତ୍ତ୍ୱେ ଦେଶକୁ ନେତୃତ୍ୱ ଦେଇ ପାରିନାହାନ୍ତି । ଶାସ୍ତ୍ର-ଅଧ୍ୟୟନ ମନୁଷ୍ୟ ଜୀବନର ଚରମ ଲକ୍ଷ୍ୟ ନୁହେ । ମେରୁ-ଦଣ୍ଡହୀନ ମନୁଷ୍ୟ ଗଢୁଥିବା ଶିକ୍ଷାପଦ୍ଧତିର ପରିବର୍ତ୍ତନ ଆବଶ୍ୟକ ।

ବେଦ—( ପରିହାସଭରା ସ୍ୱରରେ ) କିନ୍ତୁ ସ୍ୱାଧୀନତା ଯଦି ସ୍ୱେଚ୍ଛାଚାର ହୁଏ । ମେରୁଦଣ୍ଡ ଯଦି ଅନମନୀୟ ହୁଏ— ତେବେ ସମସ୍ୟା ଜଟିଳ ହେବ । ସମସ୍ତେ ଯଦି ନେତା ହୁଅନ୍ତି—ନୀଚ ହେବ କିଏ ?

( ହଠାତ୍ ଶଯ୍ୟାନ ରୋଗୀ ଆରୁଣି ଚିତ୍କାର କରି ଉଠିଲେ—
ଇନ୍‌କିଲାବ ଜିନ୍ଦାବାଦ୍ ! ଇନ୍‌କିଲାବ ଜିନ୍ଦାବାଦ୍ ! )

[ ଉପମନ୍ୟୁ ଓ ବେଦ ଉଭୟେ ଚମକି ପଡ଼ିଲେ । ଶଯ୍ୟାପାଖକୁ ଯାଇ ଡାକିଲେ, ଆରୁଣି ! ଆରୁଣି ! ]

ଆରୁଣି—ଇନ୍‌କିଲବ ଜିନ୍ଦାବାଦ !

ବେଦ—ଏ କଣ ଅର୍ଥହୀନ ପ୍ରଳାପ ? କଣ କହିବାକୁ ଚାହାନ୍ତି ଆରୁଣି ଭାଇ ! ଆଚ୍ଛା ଉପମନ୍ୟୁ, ଯାଅ, ଗୁରୁଦେବଙ୍କୁ ଖବର ଦିଅ । ଆରୁଣିର ଅବସ୍ଥା ବଡ଼ ସଙ୍କଟଜନକ ମନେ ହେଉଛି ।

( ଉପମନ୍ୟୁର ପ୍ରସ୍ଥାନ )

ଆରୁଣି—ବିପ୍ଳବ ଦୀର୍ଘଜୀବୀ ହେଉ ।

[କିଛି ସମୟ ପରେ ଗୁରୁଙ୍କ ସହିତ ଉପମନ୍ୟୁଙ୍କର ପୁନଃ ପ୍ରବେଶ]

ଆରୁଣି—ଇନ୍‌କିଲବ ଜିନ୍ଦାବାଦ୍ ।

ଗୁରୁ—ଅବ୍ରହ୍ମଣ୍ୟମ୍ । ଏ ତ ଯବନ ଭାଷା ପରି ମନେ ହେଉଛି । ଏହା ପ୍ରଳାପ ମାତ୍ର ପରି ମନେ ହୁଏ !

ବେଦ—ଗୁରୁଦେବ ! ଆରୁଣି ହେଉଛନ୍ତି ଗାନ୍ଧାର ଦେଶର ଆଗତ ଛାତ୍ର । ଏଣୁ ତାଙ୍କ ମୁଖରୁ ଯବନ ଭାଷା ସ୍ୱତଃସ୍ଫୂର୍ତ୍ତ ହୋଇ ବାହାରୁଛି ।

ଆରୁଣି—ବିପ୍ଳବ ଦୀର୍ଘଜୀବୀ ହେଉ ।

ଗୁରୁଦେବ—ଧନ୍ୟ ଆରୁଣି ! କି ନିଷ୍ଠା ତୁମର ! କିନ୍ତୁ ବିପ୍ଳବ ଓ ପ୍ଲାବନ ଏକ କଥା ନୁହେଁ । ତୁମେ କହିବାକୁ ଚାହଁ ପ୍ଲାବନ ଦୀର୍ଘକାଳ ସ୍ଥାୟୀ ହେଉ । ସେପରି ହେଲେ ତୁମର ଗୁରୁଭକ୍ତିର ପରାକାଷ୍ଠା ପ୍ରକାଶିତ ହେବ ଓ ତୁମେ ଦୀର୍ଘକାଳ ପର୍ଯ୍ୟନ୍ତ କେଦାରଖଣ୍ଡର ପ୍ଲାବନକୁ ନିଜର ଶରୀରଦ୍ୱାରା

ବୋଧ କରିବ । ସାଧୁ, ଶିଷ୍ୟ, ସାଧୁ ! ଅଚେତନ ଅବସ୍ଥାରେ ମଧ୍ୟ ତୁମର ଚିତ୍ତ ଗୁରୁସେବାରେ ମଗ୍ନ ।

ଉପମନ୍ୟୁ—ମୋର ମନେ ହୁଏ, ଗୁରୁଦେବ, ଏ ପ୍ରଳାପର ପ୍ରତିକାର ନ କଲେ, ପରିଣତି ସାଂଘାତିକ ହୋଇପାରେ ।

ଗୁରୁ—ତୁମେ ଚିନ୍ତା କର ନାହିଁ, ଉପମନ୍ୟୁ ! ଏଇ ଔଷଧ ଆରୁଣିକୁ ଖୁଆଇ ଦେଲେ ତାର ଚିତ୍ତ ସୁସ୍ଥ ଅବସ୍ଥାକୁ ଆସିଯିବ ।

( ଅନ୍ୟ ପାତ୍ରରେ ଆଣିଥିବା ଔଷଧକୁ ଆରୁଣିକୁ ଖୁଆଇଲେ )

ଦେଖ, ସାବଧାନ ହୋଇ ଏଠାରେ ଜଗିଥିବ । ରାତିରେ ଯଦି ଅବସ୍ଥା ସଙ୍କଟାପନ୍ନ ହୁଏ, ତେବେ ମୋତେ ଖବର ଦେବ ।

( ପ୍ରସ୍ଥାନ )

## —ଦୃଶ୍ୟାନ୍ତର—

( କୌଣସି ଏକ କଲେଜର ଇଉନିଅନ ଅଫିସ୍ । ଗୋଟିଏ କୋଣରେ ଗୋଟିଏ ଟେବୁଲ ଓ ମଝିରେ ଗୁଡ଼ିଏ ଚାଙ୍ଗୁଡ଼ା ଚେୟାର । ପ୍ରବେଶ କଲେ ଆମର ପୂର୍ବପରିଚିତ ଆରୁଣି, ଉପମନ୍ୟୁ ଓ ବେଦ । କିନ୍ତୁ ସେମାନଙ୍କର ବେଶଭୂଷା ସମ୍ପୂର୍ଣ୍ଣ ଆଧୁନିକ—ଅର୍ଥାତ୍ ସମସ୍ତଙ୍କର ଦେହରେ ଧଳା ପେଣ୍ଟ ଓ ରଙ୍ଗୀନ୍ ବୁଶ୍ ଶାର୍ଟ । କେଶଗୁଚ୍ଛ ସୁଚାରୁ ପ୍ରସାଧିତ । ଦେହର ପରିବର୍ତ୍ତନ ସଙ୍ଗେ ମାନସିକ ପରିବର୍ତ୍ତନ ମଧ୍ୟ ଲକ୍ଷ୍ୟ କରିବାର କଥା । ତିନିହେଁଙ୍କ ମୁହଁରୁ ନେତୃତ୍ୱର ଛଟା ବାହାରୁଛି ଓ ବାହାରୁଛି ସିଗାରେଟ୍‌ର ଧୂଆଁ । )

ଆରୁଣି—ବୁଝିଲ ବନ୍ଧୁ ଉପମନ୍ୟୁ—It is impossible ।
ବିଂଶ ଶତାବ୍ଦୀର ସପ୍ତମ ଦଶକରେ ଶୁକ୍ଳକେଶ ଦୀର୍ଘଶ୍ମଶ୍ରୁ ବର୍ଣ୍ଣିତ ଓ ଚନ୍ଦନଚର୍ଚ୍ଚିତ କଳେବର ଅଧ୍ୟକ୍ଷଙ୍କୁ ନେଇ ଚଳିବା ଏକବାରେ ଅସମ୍ଭବ । ପ୍ରିନ୍‌ସିପାଲ୍ ଯେପରି ଅତି ଶୀଘ୍ର କଲେଜ୍‌ରୁ ଚାଲିଯିବେ, ତହିଁର ବ୍ୟବସ୍ଥା କରିବାକୁ ହେବ, ନ ହେଲେ ଆମକୁ ଏ କଲେଜ ଛାଡ଼ି ଅନ୍ୟ କଲେଜରେ ନାମ ଲେଖାଇବାକୁ ହେବ । ନ ହେଲେ ଏ କଲେଜରେ ଆତ୍ମସମ୍ମାନ ଧରି ଚଳିବା ଏକବାରେ ଅସମ୍ଭବ ।

ବେଦ—ଦେଶ ସ୍ୱାଧୀନ ହେବାର ଆଜ ତେର ବର୍ଷ ହେଲା । ସମ୍ବିଧାନରେ ସଂଗଠନର ସ୍ୱାଧୀନତା, ମତ ପ୍ରକାଶର ସ୍ୱାଧୀନତା, ସବୁ ବ୍ୟବସ୍ଥା କରାଗଲେ । ଅଥଚ ଅଧ୍ୟକ୍ଷ କହୁଛନ୍ତି ସ୍ମୁନିୟନ ସଂଗଠନ ବାଜେ କାମ । ଚମତ୍କାର କଥା । ସେ ପୁଣି କହନ୍ତି "ପିତୃଦେବୋ ଭବ, ଆଚାର୍ଯ୍ୟ-ଦେବୋ ଭବ ।" କହିବା ପ୍ରିନ୍‌ସିପାଲ୍ ଯଦି ଦେବତା ହେବେ ଆଉ ଆମେ ଗୁରୁ ମାନବ ହୋଇ ରହିଥିବା । ତେବେ ଏ ଦେଶରେ ସାମ୍ୟବାଦର ପ୍ରତିଷ୍ଠା ହେବ କପରି ?

ଉପମନ୍ୟୁ—ଆମରି ଯୋଗୁଁ ଅଧ୍ୟକ୍ଷଙ୍କ ମନରେ ଏପରି ଭ୍ରାନ୍ତଧାରଣା ହେଉଛି । ଆମର ପିତାମାତାଙ୍କର ଭୁଲ୍ ହେଲା—ସେମାନେ ଆମ୍ଭମାନଙ୍କର ନାମ ଅଶୋକ କୁମାର, ରାଜକପୁର, ପ୍ରଦୀପ କୁମାର ନ ରଖି ଅତି ପୁରୁଣାକାଳିଆ ନାମ—ଆରୁଣି, ଉପମନ୍ୟୁ, ବେଦ ରଖିଲେ । କଲେଜ ଗୁରୁ-

ମାନଙ୍କ ରସବୋଧକୁ ପ୍ରଶଂସା କରିବାକୁ ହେବ ଯେ ସେମାନେ ପୁନାପୁନର ସଭାପତି ରୂପେ ଆରୁଣି ଦାସଙ୍କୁ ଓ ସମ୍ପାଦକ ରୂପେ ଉପମନ୍ୟୁ ମିଶ୍ରଙ୍କୁ ନିର୍ବାଚିତ କରିଛନ୍ତି । ଏହା କେବଳ ସେମାନଙ୍କର ରସବୋଧ ନୁହେଁ,ଆମ୍ଭମାନଙ୍କ ପ୍ରତି ଏହା ଏକ 'challenge, ଆମର ନେତୃତ୍ୱକୁ ଏକ ଆହ୍ୱାନ ।

ବେଦ—ହଁ, ପ୍ରିନ୍‌ସିପାଲ୍ ତ ସେ ଦିନ ସେହି କଥା କହୁଥିଲେ । ଆରୁଣି ଦିନେ ଧାନକ୍ଷେତରେ ବନ୍ଧ ହୋଇ ପାଣିସୁଅ ଅଟକାଇଥିଲେ, ଆଜିର ଆରୁଣିଦାସ ପୁନାପୁନ୍ ସଭାପତି ରୂପେ ସେହିପ୍ରକାର ଗୁରୁଭକ୍ତିର ପରାକାଷ୍ଠା ଦେଖାଇବେ ବୋଲି ସେ ଆଶା କରିଥିଲେ ।

ଆରୁଣି—ହଁ, ସେଇଟା ଥିଲା ଅଧ୍ୟକ୍ଷଙ୍କର ଅଭିନନ୍ଦନର ଭାଷା । ତାଙ୍କର ଆଶୀର୍ବାଦର ମର୍ମ । କିନ୍ତୁ ସେ ଜାଣନ୍ତି ନାହିଁ— କାଲି ଯଦି କଲେଜ୍‌ରେ ଧର୍ମଘଟ ହୁଏ, ତେବେ ଇଏ ଆରୁଣି ଦାସ ବୈଦିକ ଯୁଗର ଆରୁଣି ପରି କଲେଜ୍ କ୍ଲାସର ଦ୍ୱାରବନ୍ଧ ଆଗରେ ଶୋଇପଡ଼ିବ ଯେପରି ଛାତ୍ର-ମାନଙ୍କର ସ୍ରୋତ କ୍ଲାସ ଭିତରକୁ ପଶି ନ ପାଏ—ସେଥି-ପ୍ରତି ପଣ କରିବ ।

ଉପମନ୍ୟୁ—Bravo, ଖୁବ୍ ଭଲ୍ ଆଦର୍ଶରେ ଅନୁପ୍ରାଣିତ ହୋଇଛ ତୁମେ ।

ବେଦ—ଆଜି ତୁମର ବି ମନେଥିବ ଉପମନ୍ୟୁ, ତୁମେ କଲେଜ ପୁନାପୁନ୍‌ର ସଂପାଦକ ନିର୍ବାଚିତ ହେଲବେଳେ ବୁଢ଼ା

ପ୍ରିନ୍‌ସିପାଲ୍ ତୁମକୁ ଅଭିନନ୍ଦନ ଜଣାଇ କହିଥିଲେ, ବୈଦିକ ଯୁଗରେ ଉପମନ୍ୟୁ ଯେପରି ଗୁରୁ ଆଦେଶ ଯୋଗୁଁ କ୍ଷୁଧାତୁର ହୋଇ ଶେଷରେ ଅର୍କପତ୍ର ଖାଇ ଅନ୍ଧ ହୋଇଗଲେ, ସେହି ଆଦର୍ଶ ଯେପରି ସମ୍ପାଦକ ଅନୁସରଣ ନ କରନ୍ତି । .

ଉପମନ୍ୟୁ—ଓଃ Sure ! ନିଶ୍ଚୟ, ନିଶ୍ଚୟ, ଅନଶନ ଓ ଉପମନ୍ୟୁ ଏକ କଥା । କାଲି ଯଦି କଲେଜରେ ଛାତ୍ର ଧର୍ମଘଟ ହୁଏ, ତେବେ କଲେଜ ପ୍ରିନ୍‌ସିପାଲ୍‌ଙ୍କ ଘର ଆଗରେ ଆମରଣ ଅନଶନ କରିବାର ଦାୟିତ୍ୱ ଏଇ ଅଧମ ସମ୍ପାଦକଙ୍କ ଉପରେ ଛାଡ଼ିଦିଅ । ଦେଖ, ମୁଁ କିପରି ସାରା ସହରରେ ସାରା ଓଡ଼ିଶାରେ ବିଶୃଙ୍ଖଳା ସୃଷ୍ଟି କରିବି ।

ବେଦ—ତୁମ ସପକ୍ଷରେ ଯେଉଁ ଛାତ୍ରମାନେ ଭୋଟ ଦେଇ ତୁମ ଦୁହିଙ୍କୁ ନିର୍ବାଚିତ କରିଛନ୍ତି, ସେମାନଙ୍କର ଭୋଟ ସାର୍ଥକ ହୋଇଛି । ଓଡ଼ିଶାର ଛାତ୍ର ସମାଜକୁ ବାସ୍ତବିକ ତୁମେ ଦୁହେଁ ହିଁ ନେତୃତ୍ୱ ଦେଇ ପାରିବ ।

ଉପମନ୍ୟୁ—ଆଜି ବେଦ, ତୁମର କଥା ଠିକଏ କହେଁ । ତୁମକୁ ଉପସଭାପତି ରୂପେ ନିର୍ବାଚିତ କରି କଲେଜ ପୁନାପୁନ ମଣିକାଞ୍ଚନ ସଂଯୋଗ କରିଛି । ପ୍ରେମର ମୂର୍ତ୍ତିମାନ ଅବତାର ତୁମେ କର୍ତ୍ତୃପକ୍ଷଙ୍କର ଶୃଙ୍ଖଳାର ବାହାରେ ଓ ଛାତ୍ରୀସମାଜର ଆତଙ୍କର କାରଣ, ଏ କଥା କିଏ ନ ଜାଣେ ?

ବେଦ– ତୁମ ଦୁହିଙ୍କ ସଙ୍ଗେ ସମକକ୍ଷ ହେବାର ଆସ୍ପର୍ଦ୍ଧା ମୋର ନାହିଁ, ଉପମନ୍ୟୁ ! ଗାନ୍ଧି ଓ ନେହେରୁ ପରି, ଲେନିନ୍ ଓ ଷ୍ଟାଲିନ୍ ପରି, ଓ୍ୱାଶିଂଟନ୍ ଓ ଲିଙ୍କନ୍ ପରି, ମାଓ ସେତୁଂ ଓ ଚୌଏନ୍ ଲାଇ ପରି ଆରୁଣି ଓ ଉପମନ୍ୟୁ ଦୁଇ ଜଣ ବଶିଷ୍ଟ ଛାତ୍ର ନେତାଙ୍କର ନେତୃତ୍ୱକୁ ଛାତ୍ର ସମାଜ ଅପେକ୍ଷା କରି ବସିଛି । ମୋର ପୂର୍ଣ୍ଣ ବିଶ୍ୱାସ ତୁମେ ଦୁହେଁ ଦିନେ ବଜ୍ଜୁ ପଟ୍ଟନାଏକ ଓ ବୀରେନ ମିତ୍ର ପରି ଏ ରାଜ୍ୟର ସର୍ବୋଚ୍ଚ ଶାସନକର୍ତ୍ତା ହୋଇ ପାରିବ । ତୁଳନାଟି ଦୁଇ ପଦରୁ ବାଦେ ।

ଆରୁଣି– ନା, ନା, ଉପମା ଠିକ୍ ହେଲ ନାହିଁ, ଅସଲ ଉପମା ହେଉଛି ବନ୍ଧୁଆଡ ଦୁଇ ପଦରୁ ଲୁଣ୍ଠାଇ ଦିଏ । ଆଧୁନିକ ସଭ୍ୟତା, ସଂସ୍କୃତି ଓ ପ୍ରଗତି ମୂଳମନ୍ତ୍ରର ହେଲା ସଂଘର୍ଷ । ସଂଘର୍ଷର କଠୋର ନିକଷରେ ପରୀକ୍ଷିତ ହେଲେ ଆମର ନେତୃତ୍ୱ ଯଥାର୍ଥ ବୋଲି ପ୍ରତିପାଦିତ ହେବ । ଚୀନ୍‌ର ମାଓ ସେତୁଂଙ୍କ କଥା ଦେଖ । ସଂଘର୍ଷଦ୍ୱାରା ସେ ପୃଥିବୀର ନେତୃତ୍ୱ ନେବାକୁ ଗୃହାନ୍ତି ।

ଉପମନ୍ୟୁ– କିନ୍ତୁ ଆମେ ଏହି କଲେଜ ୟୁନିୟନରେ ମାଓ ସେତୁଂଙ୍କ ପଦାଙ୍କ ଅନୁସରଣ କଲେ ବିପଦର ସମ୍ମୁଖୀନ ହେବା ।

ଆରୁଣି– ବିପଦ ହିଁ ପୌରୁଷ ଓ ନେତୃତ୍ୱର ନିକଷ । କଲେଜର ଶତ ଶତ ଛାତ୍ର ଯେତେବେଳେ ଆମକୁ ବିଶ୍ୱାସ କରି ଭୋଟ ଦେଇଛନ୍ତି, ଆମକୁ ସେହି ବିଶ୍ୱାସଯୋଗ୍ୟତା ପ୍ରତିପାଦିତ

କରିବାକୁ ହେବ । ସେଥିପାଇଁ ପ୍ରତ୍ୟକ୍ଷ କାର୍ଯ୍ୟାନୁଷ୍ଠାନ କରିବାକୁ ହେବ । ଏଥିପାଇଁ ପୁନଃପୁନ ତରଫରୁ ଅତି ଶୀଘ୍ର ପ୍ରିନ୍‌ସିପାଲଙ୍କୁ ଧର୍ମଘଟ ନୋଟିସ୍ ଦିଆଯାଉ । ଏହା ବର୍ଷର ଆରମ୍ଭ ସମୟ । ପଢ଼ାଶୁଣା ଭଲ ଭାବରେ ଆରମ୍ଭ ହୋଇନାହିଁ । ଏଇ ସମୟରେ କିଛିଦିନ ଧର୍ମଘଟ ଚାଲିଲେ ପଢ଼ାଶୁଣାର ବିଶେଷ କିଛି କ୍ଷତି ହେବ ନାହିଁ, ଅଥଚ ଛାତ୍ରମାନଙ୍କ ମଧ୍ୟରେ କେଉଁମାନେ ବାସ୍ତବିକ ନେତୃତ୍ୱ ପାଇଁ ଉପଯୁକ୍ତ ତାହା ଜଣା ପଡ଼ିଯିବ । ମୁଁ ଏ କ୍ଷେତ୍ରରେ ତୁମମାନଙ୍କର ସକ୍ରିୟ ସହଯୋଗ କାମନା କରେଁ ।

ବେଦ— ଷୋଳ ଅଣା ସହଯୋଗ ପାଇବ । ତୁମ ଦୁହିଁଙ୍କ ପରି ନେତାଙ୍କର ନେତୃତ୍ୱ ପୂର୍ଣ୍ଣ ହେବା ଦରକାର । ନ ହେଲେ ଆମେ କ୍ରମେ ଜନ ସାଧାରଣଙ୍କ ଓ ଛାତ୍ର ସମାଜର ସହାନୁଭୂତି ହରାଇ ବସିବା ।

ଆରୁଣି—ସେ କଥା ମଧ୍ୟ ମୁଁ ଆଗରୁ ସ୍ଥିର କରିଛି । ଉତ୍କୃଷ୍ଟ ସେନାପତି ସୈନ୍ୟ ପରିଚାଳନାର କୌଶଳ ଆଗରୁ ସ୍ଥିର କରି ଓ ସମ୍ଭାବ୍ୟ ବିପଦ ଓ ପ୍ରତ୍ୟାକ୍ରମଣ ପ୍ରତି ଯଥେଷ୍ଟ ସତର୍କ ରହି ଯୁଦ୍ଧରେ ଅଗ୍ରସର ହୁଅନ୍ତି । ତେଣୁ ଏବେ ନୂଆ ହୋଇ ଭାବିବାର କିଛି ନାହିଁ ।

ଉପମନ୍ୟୁ—ତେବେ, କେଉଁ କାରଣ ଦେଖାଇ ଧର୍ମଘଟ ନୋଟିସ ଦିଆଯିବ ?

ଆରୁଣି—ଏ କଲେଜ କ୍ଷେତ୍ରରେ ତୁମ୍ଭମାନଙ୍କର ଧାରଣା କଣ ମୁଁ ଜାଣେ ନାହିଁ । କିନ୍ତୁ ମୁଁ ଭାବୁଛି, ଅନ୍ୟାନ୍ୟ କଲେଜ

ତୁଳନାରେ ଏଇ କଲେଜ ବାରଣ୍ଡାରେ ଗ୍ମବର ସିଗାରେଟ ଖଣ୍ଡେ ଟାଣିବାର ସ୍ୱାଧୀନତା ନାହିଁ, ଦଶଟାରୁ ପାଞ୍ଚଟା ମଧ୍ୟରେ କମନ୍ ରୁମରେ ସଙ୍ଗୀତଚର୍ଚ୍ଚା କରିବାର ସ୍ୱାଧୀନତା ନାହିଁ, ହଷ୍ଟେଲ୍‌ରେ ସକାଳେ ଦୁଇ ଘଣ୍ଟା ଓ ସନ୍ଧ୍ୟାରେ ଦୁଇ ଘଣ୍ଟା ପାଟି ଫିଟାଇବାର ସ୍ୱାଧୀନତା ନାହିଁ, ଛୁଟୀ, ଭଦ୍ର ମହିଳାମାନଙ୍କ ସହିତ ବାର୍ତ୍ତାଳାପ କରିବାର ସ୍ୱାଧୀନତା ନାହିଁ । ଏହା ଜେଲ୍ ନୁହେ ତ ଆଉ କଣ ? ବନ୍ଧୁଗଣ, ଆମ ଦେଶର ନେତାମାନେ ଆମର ପାଇଁ ସଂବିଧାନରେ ମୌଳିକ ଅଧିକାରମାନ ଗଢ଼ି ଦେଇଛନ୍ତି—ସ୍ୱାଧୀନ ମତ ବ୍ୟକ୍ତ କରିବାର, ସଂଗଠନ କରିବାର, ସ୍ୱାଧୀନ ମିଳାମିଶା କରିବାର ଅଧିକାର ଦେଲେ । କିନ୍ତୁ ଏହି କଲେଜରେ କୌଣସି ମୌଳିକ ଅଧିକାର ଅଛି କି ?

ଉପମନ୍ୟୁ }
ବେଦ } ନାହିଁ ।

ଆରୁଣି—ତେବେ ଏହି ଅନୁଷ୍ଠାନକୁ ଜେଲଖାନାରୁ କଲେଜରେ ପରିବର୍ତ୍ତିତ କରିବାକୁ ତୁମ୍ଭେମାନେ ନିଶ୍ଚୟ ଚାହଁ ?

ଉପମନ୍ୟୁ }
ବେଦ } ହଁ, ନିଶ୍ଚୟ ।

ଆରୁଣି—ଏ ଅନୁଷ୍ଠାନର ଏ ଶୋଚନୀୟ ଦୁର୍ଗତି ପାଇଁ ଦାୟୀ କିଏ ?

ଉପମନ୍ୟୁ } ( ଏକ ସାଙ୍ଗରେ ) ଆମର ପ୍ରିନ୍‌ସିପାଲ୍ ।
ବେଦ } ଆମେ ସମସ୍ତେ ।

ଆରୁଣି—ହଁ ଉଭୟ ଉତ୍ତର ହିଁ ସତ୍ୟ । ଆମର ଦୁର୍ବଳତା ଓ ପ୍ରିନ୍‌ସିପାଲଙ୍କ ଏକଛତ୍ର ଶାସନ—ଉଭୟ ହେଉଛି ଆମର ଦୁର୍ଗତିର କାରଣ । କିନ୍ତୁ ଆମକୁ ଏହାର ଉପଯୁକ୍ତ ପ୍ରତିକାର କରିବାକୁ ହେବ । ସଂଗଠନକୁ ଅଧିକ ଶକ୍ତିଶାଳୀ କରିବାକୁ ହେବ ଓ ପ୍ରିନ୍‌ସିପାଲଙ୍କ ବଦଳି ଦାବୀ କରିବାକୁ ହେବ ।

ଉପମନ୍ୟୁ—ଠିକ୍ କହୁଛ ଆରୁଣି ଦାସ । ଧଳା ଦାଢ଼ୀ ଓ ଧଳା ବାଳ ଥିବାରୁ ପ୍ରିନ୍‌ସିପାଲ ଭାବୁଛନ୍ତି, ସତେ ଯେପରି ସେ ପୁରାଣ କାଳର ଆଶ୍ରମର କୁଳପତି । ଏ ବିଂଶ ଶତାବ୍ଦୀରେ ମଧ୍ୟ ଲାଲ ଆଖି ଦେଖାଇ ଶାସନ କରିବାକୁ ଚାହାନ୍ତି । ଆମର ମୌଳିକ ଅଧିକାର କ୍ଷୁର୍ଣ୍ଣ କରିବାକୁ ଚାହାନ୍ତି । ଏହାର ପ୍ରତିକାରର ଏକମାତ୍ର ପନ୍ଥା ହେଉଛି—ଧ—ର୍ମ—ଘ—ଟ ! STRIKE !

ଆରୁଣି—ଠିକ୍ କହିଛ ଉପମନ୍ୟୁ । ପ୍ରିନ୍‌ସିପାଲଙ୍କ ଦୌରାତ୍ମ୍ୟପୂର୍ଣ୍ଣ ଶାସନର ବିରୋଧ କରିବାକୁ ହେବ । ତାଙ୍କ ବଦଳି ଦାବୀ କରି ଧର୍ମଘଟ କରିବାକୁ ହେବ ।

ବେଦ—ଠିକ୍ କଥା, କିନ୍ତୁ ଉପମନ୍ୟୁଙ୍କର କଥାରୁ ମୁଁ ଗୋଟିଏ ନୂଆ ଉପାୟ ଭାବୁଛି । ଧର୍ମଘଟ ହେଉଛି ଚରମ ଅସ୍ତ୍ର ।

ସେ ଅସ୍ତ୍ର ପ୍ରୟୋଗ କରିବା ପୂର୍ବରୁ ଅଧ୍ୟକ୍ଷଙ୍କ ଆଚରଣ ସଂଶୋଧନ ପାଇଁ ଏକ ସହଜ ପନ୍ଥା ମୁଁ ଭାବୁଛି ।

ଆରୁଣି – କଣ ସେ ଉପାୟ ?

ବେଦ—ଏବେ ଉପମନ୍ୟୁ କହୁଥିଲେ, ପ୍ରିନ୍‌ସିପାଲଙ୍କ ହାତେ ଲମ୍ବର ଦାଢ଼ୀ ଯୋଗୁଁ ତାଙ୍କର ମନୋବୃତ୍ତି ମଧ୍ୟ ପୁରୁଣାକାଳିଆ ହୋଇ ରହିଛି । ମୁଁ ଭାବୁଛି, ଆମେ ସବୁ ତାଙ୍କର ଦାଢ଼ୀ ମୂଳ ପୂରା ଉଡ଼ାଇ ଦେବାକୁ ବାଧ୍ୟ କରୁ, ତେବେ ତାଙ୍କର ମାନସିକ ପରିବର୍ତ୍ତନ ଆସିଯିବ ।

ଆରୁଣି—ତୁମର ଚିନ୍ତାରେ ମୌଳିକତା ନାହିଁ, ବେଦ । ମୁଁ ଠିକ୍ ସେଇ ସେଇକଥା ହିଁ ଭାବୁଥିଲି । ସେ କଥା ପ୍ରିନ୍‌ସିପାଲଙ୍କୁ କହିଛି ଯେ ସେ ଯଦି ପନ୍ଦର ଦିନ ମଧ୍ୟରେ ମୁଖମଣ୍ଡଳ ଭଦ୍ର ନ ହୁଅନ୍ତି, ତେବେ ଛାତ୍ର ସମାଜରୁ ଭଦ୍ର ବ୍ୟବହାର ଆଶା କରିବେ ନାହିଁ । ଏଥିରେ ହିଁ ଧର୍ମଘଟର ପ୍ରଚ୍ଛନ୍ନ ଇଙ୍ଗିତ ଅଛି । ମୁଁ ପ୍ରଥମରୁ ଭାବୁଥିଲି ପ୍ରିନ୍‌ସିପାଲଙ୍କ ଦାଢ଼ୀ ଖିଅର ବିଷୟରେ ଧର୍ମଘଟ ନୋଟିସ୍ ଦିଆଯାଉ । କାରଣ ସାପର ଦାନ୍ତରେ ଯେପରି ବିଷ ଥାଏ ସେହିପରି ପ୍ରିନ୍‌ସିପାଲଙ୍କ ଦାଢ଼ୀରେ ସ୍ୱେଚ୍ଛାଚାର ଭରିଛି । ପ୍ରିନ୍‌ସିପାଲଙ୍କ ଦାଢ଼ୀ ପକାଇ ଦେଲେ ଆମେ ସମସ୍ତ ମୌଳିକ ଅଧିକାର ଫେରି ପାଇବା ବୋଲି ମୋର ଦୃଢ଼ ବିଶ୍ୱାସ । କିନ୍ତୁ ତାଙ୍କର ଦାଢ଼ୀ ଖିଅର ବିଷୟକୁ ନେଇ ଧର୍ମଘଟ ନୋଟିସ୍ ଦେଲେ ଲୋକେ ଆମକୁ ଭୁଲ୍ ବୁଝି ପାରନ୍ତି, ଆମର ଦାବୀକୁ ପିଲାଳିଆ ଭାବ

ପାରନ୍ତି ବୋଲି ମୁଁ ଟସ ଦାବୀ ଉପରେ ଜୋର ଦେଉ-
ନାହିଁ ।

( ନେପଥ୍ୟରୁ—ମୁଁ ଭିତରକୁ ଆସି ପାରେଁ କି ? )

ଆରୁଣି—Come in ଆସିବା ହେଉ ।

( ପ୍ରବେଶ କଲେ କଲେଜ ପ୍ରିନ୍‌ସିପାଲ । ଅ:ଧ୍ୟୋପ ଧୌମ୍ୟଙ୍କ ପରି ସୌମ୍ୟମୂର୍ତ୍ତି, ଶୁକ୍ଳ କେଶ ଓ ଶ୍ମଶ୍ରୁରେ ଗମ୍ଭୀର ଦେଖା ଯାଉଛନ୍ତି । ବେଶଭୂଷା ଆଧୁନିକ । କୋଟ୍, ପେଣ୍ଟ, ଟାଇ ଯୋଗୁଁ ତାଙ୍କର ଚେହେରା ମିଶନାରୀ ସାହେବ ଭଳିଆ ଦେଖା ଯାଉଛି । କଥାବାର୍ତ୍ତା ସବୁବେଳେ ଉପଦେଶାତ୍ମକ ଜଣାପଡ଼େ । ଆରୁଣି ଆଦ ସସମ୍ଭ୍ରମେ ଗାତ୍ରୋତ୍ଥାନ କଲେ । )

ପ୍ରିନ୍‌ସିପାଲ—ହେଲ୍ଲୋ, ଆରୁଣି, ଉପମନ୍ୟୁ, ବେଦ—ଧୌମ୍ୟ ଆଶ୍ରମର ତିନି ଜଣ ମୁଖ୍ୟ ଶିଷ୍ୟ । ମୁଁ ତୁମଠାରୁ ଅନେକ କିଛି ଆଶାକରେଁ । ତୁମେ ନିଶ୍ଚୟ ଦିନେ ସେଇ ପୁରାଣ ଯୁଗର ଶ୍ରେଷ୍ଠ ଶିଷ୍ୟମାନଙ୍କ ପରି ବିଦ୍ୟାରେ କୃତିତ୍ୱ ଅର୍ଜନ କରିବ ।

ଆରୁଣି—ସାର୍ ଆଜକାଲି ଆଉ ବିଦ୍ୟାରେ କୃତିତ୍ୱର ମୂଲ୍ୟ ନାହିଁ । ଭଲ ପାସ କଲେ କେବଳ ପ୍ରଫେସର୍ ବା ମାଷ୍ଟର୍ ଚାକିରୀ—ଯାହାକି ଆମ ଜାତିର ଦେହରେ ଯିବ ନାହିଁ ।

ପ୍ରିନ୍‌ସିପାଲ୍‌—ତେବେ କଲେଜକୁ ଆସିଛ କାହିଁକି ? ତୁମେ ତିନି ଜଣ ସୁନିୟନ୍‌ କର୍ମକର୍ତ୍ତା ଭଲ ପଢ଼ି ଛାତ୍ରମାନଙ୍କ ଆଗରେ ଉଚ୍ଚ ଆଦର୍ଶ ଦେଖାଇବ ବୋଲି ମୁଁ ଆଶାକରେଁ ।

ଉପମନ୍ୟୁ—ଆମର ଆଦର୍ଶ କିନ୍ତୁ ସମ୍ପୂର୍ଣ୍ଣ ଭିନ୍ନ । ଦେଶରେ ତ ହଜାର ହଜାର ପିଲା ପାଠ ପଢ଼ୁଛନ୍ତି । କିନ୍ତୁ ନେତା ହେଉଛନ୍ତି କେତେ ଜଣ ? ଆମେ ଦେଶକୁ ଏକ ବଳିଷ୍ଠ ନେତୃତ୍ୱ ଦେବାକୁ ଚାହୁଁ ! ଦେଶରେ ଭଲ ଛାତ୍ର ବହୁତ ଅଛନ୍ତି ସାର୍‌, କିନ୍ତୁ ଦେଶରେ ବାସ୍ତବ ନେତାର ଅଭାବ ଓ ସେହି ଅଭାବ ଆମେ ପୂରଣ କରିବୁଁ ।

ପ୍ରିନ୍‌ସିପାଲ—ହଉ । ତୁମର କଥା ହଉ । କିନ୍ତୁ ଆରୁଣି, ତୁମେ କାଲି ମୋ ଦାଢ଼ୀ ବିଷୟରେ ଯାହା କହିଲ, ତାହା ମୁଁ ଠିକ୍‌ ବୁଝି ପାରିଲି ନାହିଁ । ତୁମର କଥା ମୋତେ ଗୋଟିଏ ଧମକ ପରି ମନେ ହେଲା । ଏବେ ମୁଁ ଶୁଣୁଛି, ମୁଁ ଯଦି ଦାଢ଼ୀ ଖିଅର ନ ହୁଏଁ, ତେବେ ତୁମେମାନେ ଷ୍ଟ୍ରାଇକ୍‌ କରିବ ?

ଆରୁଣି—କଥାଟି ସତ, ସାର୍‌ ! ଆପଣ ନିଜେ ଟିକିଏ ଭାବି ଦେଖନ୍ତୁ । ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ଯେତେବେଳେ ମନୁଷ୍ୟ ଚନ୍ଦ୍ରଲୋକକୁ ଯିବାକୁ ବସିଲାଣି, ଯେତେବେଳେ ଭଣ୍ଡାଗ୍ରୀମାନେ ବେକାର ହୋଇ ବସିଛନ୍ତି, ଯେତେବେଳେ ଭାରତୀୟ ବ୍ଲେଡ୍‌ର ଅଭାବ ନାହିଁ, ସେତେବେଳେ ଆମର ପ୍ରିନ୍‌ସିପାଲ ଆପଣଙ୍କ ମୁହଁରେ, ଏତେ ଦାଢ଼ୀ ଥିବା ବଡ଼ ଅସୁନ୍ଦର, ବଡ଼ ଅଶୋଭନୀୟ ମଧ୍ୟ ।

ପ୍ରିନ୍‌ସିପାଲ—କିନ୍ତୁ ମୋ ଦାଢ଼ୀ ଥିବାରୁ ତୁମର ପଢ଼ାପଢ଼ିରେ ତ କିଛି ବାଧା ହେଉ ନାହିଁ ବା ତୁମର ୟୁନିୟନ୍ କାମରେ ବ୍ୟାଘାତ ଘଟୁନାହିଁ ।

ଉପମନ୍ୟୁ—ତାହା ସତ, କିନ୍ତୁ ସାର୍ ପିଲମାନଙ୍କର ଧାରଣା ଆପଣଙ୍କର ଶୃଙ୍ଖଳ ପରାୟଣତା ସଙ୍ଗେ ଦାଢ଼ୀର ନିଶ୍ଚୟ କାର୍ଯ୍ୟ କାରଣ ସମ୍ପର୍କ ଅଛି ।

ପ୍ରିନ୍‌ସିପାଲ—ତୁମେ ଏ କଥା ଗମ୍ଭୀର ଭାବରେ କହୁଛ, ଉପମନ୍ୟୁ ?

ଉପମନ୍ୟୁ—ହଁ, ସାର୍ !

ପ୍ରିନ୍‌ସିପାଲ—କିନ୍ତୁ ପୃଥିବୀର ଅନେକ ବଡ଼ ଲୋକଙ୍କର ତ ଧଳା ଦାଢ଼ୀ ଥାଏ । କବୀନ୍ଦ୍ର ରବୀନ୍ଦ୍ରନାଥ, ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର, ପଣ୍ଡିତ ନୀଳକଣ୍ଠ, ବାର୍ଣ୍ଣାଡ୍‌ଶ—ଏମାନେ ଦାଢ଼ୀ ସତ୍ତ୍ୱେ ଲୋକପ୍ରିୟ ହୋଇଛନ୍ତି ।

ଆରୁଣି—କିନ୍ତୁ ବିଂଶ ଶତାବ୍ଦୀର ମଧ୍ୟାହ୍ନରେ ପ୍ରିନ୍‌ସିପାଲ୍ ହେବା ସମ୍ପୂର୍ଣ୍ଣ ଭିନ୍ନ କଥା ।

ପ୍ରିନ୍‌ସିପାଲ—ଆଚ୍ଛା, ଛାଡ଼ ସେ କଥା । ତେବେ ତୁମେମାନେ ନିଶ୍ଚୟ କରି ସାରିଛ ଯେ ଦାଢ଼ୀ ଖିଅର ନ ହେଲେ ତୁମେମାନେ ଧର୍ମଘଟ କରିବ ?

ଆରୁଣି—ହଁ ସାର୍ !

ପ୍ରିନ୍‌ସିପାଲ—କେତେ ଦିନ ଯାଏ ଧର୍ମଘଟ ଚଳାଇ ରଖିବ ?

ଆରୁଣି—ଆମର ଦାବୀ ପୂରଣ ହେବା ପର୍ଯ୍ୟନ୍ତ ।

ପ୍ରିନ୍‌ସିପାଲ—ଏଥିରେ କେତେ man hour, ଅର୍ଥାତ୍ professor

hour କେତେ ଗୁଡ଼ାଏ ଘଣ୍ଟା ନଷ୍ଟ ହେବ ତାହା ଭାବି ଦେଖିଛ କି ?

ଆରୁଣି—ଆମେ ନାରୁପାୟ, ସାର୍ ! କେବଳ ମୁଁ ସେତିକ ନୁହେ ! ତାଙ୍କ ସଙ୍ଗେ ଆମରଣ ଅନଶନ କରିବାକୁ ଉପମନ୍ୟୁଠାରୁ ପ୍ରତିଶ୍ରୁତି ଆମେ ପାଇସାରିଲୁଣି । ତାଙ୍କ ସଙ୍ଗେ ପ୍ରତିଦିନ ସହରରେ ଶୋଭାଯାତ୍ରା, ସମ୍ବାଦପତ୍ରରେ ବିବୃତି—ସବୁ ବାହାରିବ । ଏ ସବୁ ସମସ୍ୟାର ସମାଧାନ ଆପଣଙ୍କ ହାତରେ—I mean – ଆପଣଙ୍କ ଦାଢ଼ିରେ ।

ପ୍ରିନ୍ସିପାଲ—ସମାଧାନ ମୋର ଦାଢ଼ିରେ ? ମୋର ଦାଢ଼ି ପାଇଁ ତୁମେ ପିଲେ ପାଠ ନ ପଢ଼ି ରହିବ, ଦିନ ଦିନ ଧରି ଅନଶନ କରିବ । ଆଜି ମୁଁ ଏସବୁ ଅନାଚାର, ବିଶୃଙ୍ଖଳା ଦେଖୁଥିବି ? ତୁମେ ସମସ୍ତେ ମୋର ପୁଅଝିଅ । ତୁମର ବାପମାଆ ତୁମର ଶିକ୍ଷାର ଦାୟିତ୍ୱ ମୋର ଉପରେ ଛାଡ଼ିଛନ୍ତି । ମୋର ଦାଢ଼ି ଖିଅରରେ ଯଦି ତୁମର ସନ୍ତୋଷ, ତେବେ ମୁଁ ତାହା କରିବା ପାଇଁ ପ୍ରସ୍ତୁତ ।

ଆରୁଣି—ବିଶେଷ ଧନ୍ୟବାଦ, ସାର ! ଆମର ଏ ସତ୍ ପରାମର୍ଶ ପାଇଁ ଆପଣ କିଛି ମନେ କରିବେ ନାହିଁ ।

ପ୍ରିନ୍ସିପାଲ—ଆଚ୍ଛା, ମୁଁ ଆଜି ଗୋଟିଏ ପ୍ରଶ୍ନ ପଚାରିବାକୁ ଚାହେଁ । ଭଣ୍ଡାରି ମୋର ଦାଢ଼ି ଖିଅର କଲେ ଚଳିବ, ନା, ତୁମେ କେହି ଏ କାର୍ଯ୍ୟ କରିବାକୁ ଆଗ୍ରହୀ ?

ବେଦ – ସାର୍, ମୁଁ ଏ ଗୌରବ ପୂର୍ଣ୍ଣ କାର୍ଯ୍ୟ କରିବାକୁ ପ୍ରସ୍ତୁତ ।

ପ୍ରିନ୍‌ସିପାଲ—ହଉ, ତେବେ କାଲି ସକାଳୁ ମୋ ବସାକୁ ଆସିବ । କାରଣ ପ୍ରଥମେ ତୁମକୁ ହିଁ ଘରେ ସମସ୍ତେ ଯେପରି ପାଠପଢ଼ାରେ ମନ ଦେଇପାରିବ—ଦେଖିବା ସେଇ କଥା ।

ଆରୁଣି—ହଁ ସାର୍, ସମସ୍ତେ ଆସିବୁ ଆମେ ।

( ପ୍ରିନ୍‌ସିପାଲ ପ୍ରସ୍ଥାନ କଲେ )

ଆରୁଣି—ମୁଁ ଜାଣେ, ଆମ ପ୍ରିନ୍‌ସିପାଲଙ୍କ ଭଳି କୃପଣ ଲୋକ ଦୁନିଆରେ ନାହିଁ । ତା' ନ ହେଲେ, କଲେଜ ପିଲଙ୍କ ଦ୍ୱାରା ଦାଢ଼ୀ ଖିଅର ହେବାକୁ କହିଥାନ୍ତେ ?

( ସମସ୍ତେ ହସି ଉଠିଲେ । )

—ଯବନିକା—



୨

# କାମରାଜ-ନାରଦ ଯୋଜନା

(ସ୍ଥାନ-ସ୍ୱର୍ଗପୁରୀରେ ଶଚୀଙ୍କର ସଚିବାଳୟ (Secretariat)ରେ ଶଚୀଙ୍କର ଖାସ୍ ଦପ୍ତର । ଗୋଟିଏ ବଡ଼ ସେକ୍ରେଟେରିଏଟ୍ ଟେବୁଲ୍ ଉପରେ ଗୋଟିଏ ଟେଲିଫୋନ୍ ଓ ଦଶ ବାରଟି ଫାଇଲ୍ । ଟେବୁଲ୍‌ର ଏଆଡ଼େ ଓ ଦୁଇପାଖେ ଦଶ ବାରଟି ଚେୟାର୍ । କାନ୍ଥରେ ଗୋଟିଏ ଘଣ୍ଟାରେ ସାତଟା ବାଜିବାକୁ ପନ୍ଦର ମିନିଟ୍ ଅଛି । ଦୃଶ୍ୟ ଆରମ୍ଭ ବେଳେ ଜଣେ ମୁଣ୍ଡିତ ମୁଣ୍ଡ ଶିଖାଧାରୀ ସନ୍ନ୍ୟାସୀ ଟେଲିଫୋନ୍ ଦୂରେଇ ଦେଇ ପାଖରେ ଥିବା ବୀଣାରେ ତାନ ଦେବାକୁ ଆରମ୍ଭ କଲେ । କିନ୍ତୁ ସମସ୍ତ 'ନାରାୟଣ, ନାରାୟଣ' କହି ଚିନ୍ତିତ ଭାବରେ ଇତସ୍ତତଃ ପଦଚାଳନା କଲେ । ବାମପାଖରୁ ପ୍ରବେଶ କଲେ କାମରାଜ—ଖର୍ବାକୃତି, ସୁଶୋଭନ ଯୁବକ, ବାମ-ବାହୁରେ ଧନୁ, ଦକ୍ଷିଣ ହସ୍ତରେ ଶର ଓ ପିଠିରେ ତୂଣୀର ଧରି । ଯୁବକ ସନ୍ନ୍ୟାସୀଙ୍କୁ ଭକ୍ତିଭରେ ପ୍ରଣାମ କଲେ । )

କାମରାଜ—ପ୍ରଣାମ ଚରଣେ ତବ, ଦେବରଷିବର
ଭୟେ ମୋର କମ୍ପେ କଳେବର ।
ଦେବରାଜ୍ଞୀ କାର୍ଯ୍ୟାଳୟେ ପ୍ରଦୋଷ ସମୟେ
ସୁମରିଲେ କାମରାଜେ କେବଣ ବିଷୟ ।
ଦେବର୍ଷି ନାରଦ ମୁନି ଏ ବୃଦ୍ଧ ବୟସେ
ଏ ନିଭୃତ ସ୍ଥାନେ ଡାକ କେବଣ ମାନସେ ?
କେଉଁ ଦେବୀ ପ୍ରତି ବଳିଛି କି ମନ ?
ଡାକିଛ କି ଖଞ୍ଜିବାକୁ ମୋତେ ଶରାସନ ?
ପଞ୍ଚଶରେ ମୋହିବାକୁ କାହାର ମାନସ ?
ମୋହିବାକୁ ତୁମ୍ଭ ଆଉ ଅଛି କି ବୟସ ?
ବୃଦ୍ଧକାଳେ ଏ ବିକାର ହେଲ କି କାରଣ
ମୁନିବର କର ମୋର ସଂଶୟ ମୋଚନ ।
ଅଦୂରଦର୍ଶୀ ମୁଁ ଯଦି ତୁମର ସହାୟ
ହୁଏଁ, ତେବେ କେଉଁ ଦଶା ହେବ ମୋର ହାୟ !
ଦେବହିତ ପାଇଁ ଥରେ ଯୋଖିଥିଲି ଧନୁ
ରୁଦ୍ରଙ୍କ ଶରରେ, ଜଳି ହୋଇଲି ଅତନୁ ।
ସ୍ମରି ତାହା ଆଜି ତେଣୁ କମ୍ପେ ତନୁ ମୋର
ସମ୍ମୁଖୀନ କରାଇବ କି ପରୀକ୍ଷା ଘୋର ?
ପୁଣି କେଉଁ ଦେବୀ ଅଭିଶାପ ?
କେଉଁ ଦେବ ତୃତୀୟ ନୟନ ବହ୍ନି ତାପ ?
ପୁଣି କେଉଁ ବିଡ଼ମ୍ବନା, କେତେ ଅପମାନ
ଦେବା ପାଇଁ ମୋତେ ଅବା କରୁଛ ବିଧାନ ।

କା ପ୍ରେମ ପରୀକ୍ଷା ପାଇଁ ବଳାଇଛ ସଧ ?
ଖୋଲି କହ ମତଲବ ଦେବର୍ଷି ନାରଦ ।

ନାରଦ – ନଦୀ ପରି କାଳସ୍ରୋତେ ବହେ ଅବିରାମ
ଯୁଗ ଯୁଗ ଧରି, କିନ୍ତୁ ଶାନ୍ତ ନୁହେଁ କାମ
ଉପଭୋଗ ପରେ; ତେଣୁ ଅମରାବତୀରେ
ଅମର ଜୀବନ ମଧ୍ୟ ଭରା ଅଶାନ୍ତିରେ ।
ଦିନ ପରେ ଦିନ ଯାଏ ବସେ ଦେବ ସଭା
ପରସ୍ପର ପ୍ରଶଂସାର ଅନ୍ତ ନାହିଁ ଅବା ।
ରମ୍ଭା ଉର୍ବଶୀ ମେନକା ନୃତ୍ୟ ପ୍ରତି ରାତେ
ଚାହିଁ ଭୋଳ ଦେବଗଣ ସୋମରସ ସାଥେ ।
ଏକ ଇନ୍ଦ୍ର ଦେବରାଜ ସଦା
ଅଗ୍ନି ସୂର୍ଯ୍ୟ ଯମ ତାଙ୍କୁ ସେବନ୍ତି ସର୍ବଦା ।
ନରକର ଶାସନରେ ଉନ୍ମନା ଯମ
ଜଳାଧିରାଜ୍ୟେ ବରୁଣ ଭୋଗନ୍ତି ଲୀଳା ( ସର୍ଦ୍ଦି )
କୋଷାଗାରେ ବ୍ୟସ୍ତ ସଦା ଦେବ ଧନପତି
ସୂର୍ଯ୍ୟ ଅଗ୍ନି ସଦା ଜଳି ଲଭନ୍ତି ଦୁର୍ଗତି ।
କରି ଖରି କରିବାକୁ ଗୃହେ କଳକର
ଦେବୀ ବନି ଅଲସୁଆ ଅଶ୍ୱିନୀ କୁମାର ।
ଯୁଗ ଯୁଗ ଧରି ଏହି ରୀତି ପୁରାତନ
ଚାଲିଅଛି । କିନ୍ତୁ ଏବେ ଯୁବ ଦେବଗଣ
ଚିନ୍ତାକ୍ରାନ୍ତ ବହୁତ । ସ୍ୱର୍ଗେ ଅନ୍ୟ ଦେବରାଜ
ଚିନ୍ତାକ୍ରାନ୍ତ ସେମାନେ, ନବ୍ୟ ଦେବତା ସମାଜ ।

ମର୍ତ୍ତ୍ୟ ଗଣରାଜ୍ୟେ ଦେଖ ପ୍ରତି ପାଞ୍ଚବର୍ଷେ,
ନୂଆଁ ରାଷ୍ଟ୍ରପତି ଲୋକେ ନିର୍ବାଚନ୍ତି ହର୍ଷେ ।
ନୂଆଁ ମନ୍ତ୍ରୀ, ନୂଆଁ ପ୍ରତିନିଧି
ବଦଳାଉ ଅଛୁ ମର୍ତ୍ତ୍ୟ ବନ୍ଧୁ ଦେଶେ ବିଧି ।
କିନ୍ତୁ ସ୍ୱର୍ଗେ ଏକ ଇନ୍ଦ୍ର ଏକ ବୈଶ୍ୱାନର
ଚିରକାଳ ଏକ ଚନ୍ଦ୍ର ଏକ ଦିବାକର ।
ସୁଯୋଗ ବିହୁନେ ଅନ୍ୟମାନେ
ନିଦ୍ର ଛନ୍ତି ନିସ୍ପନ୍ଦିତ ବଧିର ବଧାନେ ।
ମର୍ତ୍ତ୍ୟେ ଏକ ଯୁବକର ପିତାର ନିଧନ
ରାଜ୍ୟ ପାଇଁ ଗୃହେଁ ଥାଏ ଗୃହକ ସମାନ ।
ଏଠି କିନ୍ତୁ ସମସ୍ତେ ଅମର ।
ରଜା ସବୁ ଦିନେ ରଜା ମାରୁଅଛି ମଜା ।
ଘାସି ନିତି ଜାଟେ ଘାସ
ଇନ୍ଦ୍ରତ୍ୱର ସ୍ୱପ୍ନ ଦେଖେ ହୋଇଣ ନିରାଶ ।
ପ୍ରତିକାର କାହିଁ ସ୍ୱାର ?

କାମଦେବ—ମୋତେ କିପାଁ ଦେବ ମୁନିବର
ଦେଖାଉଛ କୁହେଳିତ ଅଗାଧ ସାଗର ?
ରଖିବାକୁ ଥରେ ମୁହିଁ ଇନ୍ଦ୍ର ମନୋପଲି (monopoly.)
ମେନକା ଓ ବସନ୍ତଙ୍କୁ ସଙ୍ଗେ ଧରି ଗଲି
ବିଶ୍ୱାମିତ୍ର ଆଶ୍ରମେକୁ ଋଷି ତପୋଭଙ୍ଗ
କରିବାକୁ, ରଚିଲି ମୁଁ ପ୍ରଣୟ ପ୍ରସଙ୍ଗ ।

ତନଯ୍ୱା-କଳଙ୍କ ଯୋଗୁ ମେନକା ସେହନୁ
ଫୋପାଡ଼ି ପକାଇଛି ମୋତେ ମନୁ ।
ତେଣୁ ଏବେ ମୁଁ ଅଧା ବେଘର
କାହାକର କାରବାରେ ଜରେଁ ମୁହଁ ଘର ।
ଏବେ ବାଲ୍‌ନୃତ୍ୟଶାଳେ ଅବା ହଲିଉଡେ (Hollywood)
ମନୋଟେକେଣେ ଳୈପ୍ସବୈଲିକପ୍ସଲ୍ଲ୍ମୀ ଜଡେ଼ ।
ଲାପ୍‌ଷ୍ଟିକ୍ ଲବାଧରା ଚପଳନୟନା
ଫିକସେନ୍ ନୃତ୍ୟେତାଳେ ଚଞ୍ଚଳଚରଣା
ପ୍ରମଦା ଅପାଙ୍ଗେ ଯୋଖେ ମୁଁ ମଦନ ଶର
ଦ୍ରାକ୍ଷାମଦେ ଯୁବଚିତ୍ତ କରଇ ଜର୍ଜର ।
ବିବିଜ୍ଞବେ ବିବସନା ନୃତ୍ୟ ପଟୀୟସୀ—
ଲକ୍ଷ୍ୟ କେତେ ଯୁବ ଚିତ୍ତ ହରେଁ ମୁହଁ ହସି ।
ଦ୍ରୌପଦୀ ବସ୍ତ୍ର ହରଣ ଦ୍ୱାପର ଯୁଗରେ
କରି ଦୁଃଶାସନ ମଲା ଭାରତ ସମରେ ।
ସଭା ମଧ୍ୟେ ତରୁଣୀର ବସନ ହରଣ
ନବତମ ସଭ୍ୟତାର ଅଟେ ନିଦର୍ଶନ ।
ସେଥିପାଇଁ ସ୍ୱର୍ଗେ ମୋର ଥାଏ ନାହିଁ ମନ
ପାଞ୍ଚାନ୍ତ ମୋ ସଙ୍ଗେ ଯଦ ମରତ ଭୁବନ
ବୁଝନ୍ତୁ ବାସ୍ତବ ସୁଖ କାହିଁ ?
ସ୍ୱର୍ଗେ ତ ସମ୍ଭୋଗ ନାହିଁ
ତେବେ କାହିଁ ଇନ୍ଦ୍ରଭୟରେ ତୁମେ ଅକାରଣ
ହୁଅ ମୁନିବର ସଦା ଅସୂୟା ପ୍ରବଣ ?

ନିଉୟର୍କେ ଅଷ୍ଟ୍ରେଲିଆ, ଭାରତେ ଅଶୋକ
ଲଣ୍ଡନେ ଶକ୍ ହୋଟେଲେ ପାଶୋରନ୍ତ ଶୋକ
ଧନେ ଷ ଅତିଥି ହେଲେ । ବା ତାଜମହଲ
ହୋଟେଲେ ବମ୍ବେରେ ଥରେ ରହିଯିବା ଗୁଲ ।
ନୃତ୍ୟେ ନବ ବାହୁ କେତେ ଯୁବତୀର ତନ
ସୁଶ୍ରୀ କଟିଦେଶ ଦୃଢ଼େ କରିବ ବେଷ୍ଟନ ।
ପାନ ପାତ୍ରେ କେଉଁ ତନ୍ୱୀ ଅପାଙ୍ଗ ତରଳ
ସଞ୍ଚିତ ପିଇବ ମଧୁ ମଦିରା ଉଚ୍ଛଳ ।

ନାରଦ—(ବାଧା ଦେଇ) ବନ୍ଦ କର ପ୍ରଗଳ୍‌ଭତା, ମୁହିଁ ବ୍ରହ୍ମସୁତ
ବାକ୍ୟଶରେ ମୋତେ ଆଉ ମାର ନାହିଁ ଛାର ।
ଦେବକାର୍ଯ୍ୟ ପୁଚ୍ଛେଁ ମୁହିଁ, ସ୍ୱର୍ଗରେ ବିପ୍ଳବ
ନବ ଯୁଗ ଅଭ୍ୟୁଦୟ କିପରି ଘଟିବ ?
ସେ ବିଷୟେ କରିଅଛି ନୂତନ ଯୋଜନା
ତହିଁର ସାଫଲ୍ୟ ପାଇଁ କରୁଛି ପ୍ରାର୍ଥନା
ତୁମର ସହାୟ ।
କିନ୍ତୁ ତୁମେ ହାୟ
ହେ ମନ୍ମଥ, ମଥିବାକୁ ଚାହିଁ ମନ ମୋର
ବାଢ଼ି କଳ୍ପନାରେ ମୋର ତ୍ରିଲୋଚନ ଘୋର ।
କିନ୍ତୁ ଯଦି ଫଳବତୀ ହୁଏ ମୋ ଯୋଜନା
ଜଗାଇବ ସ୍ୱର୍ଗପୁରେ ନବ ଉନ୍ମାଦନା
ତୁମେ ମୁହିଁ ସାଥୀ ହୋଇ ସାଧିଲେ ଏ କାର୍ଯ୍ୟ
ନବ ଯୁଗ ପ୍ରତିଷ୍ଠିତ ହେବା ଅନିବାର୍ଯ୍ୟ ।

କାମରାଜ— ଆଦେଶ ଦିଅନ୍ତୁ ମୁନିବର
କେଉଁ କାର୍ଯ୍ୟ ମଦନର
ସ୍ୱର୍ଗରେ ବିପ୍ଳବ ପାଇଁ ହୋଇବ ସହାୟ ?
ନାରଦ— ଶୁଣ ତେବେ ବିପ୍ଳବର ସହଜ ଉପାୟ
ଶଚୀ ଦେବରାଣୀ ଆଜି ଏ ସଚବାଳୟେ
ନିମନ୍ତ୍ରି ଅଛନ୍ତି ସାବତ୍ର ସାତଠା ସମୟେ
ଦେବପୂଜା ମଣ୍ଡଳ ସମିତ ।
ଦେବୀମାନଙ୍କର ଦୁଃଖ ଘୁଞ୍ଚିବ କିମିତ ?
ଦେବେ ସଦା ମାତିଛନ୍ତି ମଜା ମଜଲିସେ
ପତିବ୍ରତା ଦେବୀଙ୍କୁ ଯା ଅସୁନ୍ଦର ଦିଶେ ।
କିପରି ହୋଇବ ତାର ଯୋଗ୍ୟ ପ୍ରତିକାର
ସେ ବିଷୟ ଦେବୀଗଣ କରିବେ ବିଚାର ।
ସ୍ୱର୍ଗ ରାଜା ହୋଇଛନ୍ତି ଇନ୍ଦ୍ର ସବୁଦିନ
କିନ୍ତୁ ଅଛି ବିଧାନ ପ୍ରାଚୀନ
ଏଣୁ ଶଚୀ ବିନୁ ଇନ୍ଦ୍ର ହେନେଗ
ଧର ପଦ ଆଜି ଦୈବଯୋଗେ
ଶଚୀଙ୍କର ମନ ବଳେ ଅନ୍ୟ ଦେବ ପ୍ରତି
ସେ ସମୟେ ଯଦି ତୁମେ ବଳାଇବ ମତି
ତାଙ୍କ ତୁମର ସାୟକେ
ପରିଣତ କରିବ ତା ପ୍ରେମର ପୁଲକେ ।
ତେବେ ସେହି ଦେବ
ଶଚୀଙ୍କ ପ୍ରଣୟ ଲଭି ସ୍ୱର୍ଗେ ଇନ୍ଦ୍ର ହେବ ।

ଅନ୍ୟ କେଉଁ ଦେବୀ ସେହ୍ନପରି
କାମନା କରନ୍ତି ଯଦି ଅନ୍ୟ ଦେବେ ସ୍ମରି
ମଜ୍ଜିବ ତାଙ୍କର ମନ
ଯୋଖିବ ତାଙ୍କର ପ୍ରତି ତୁମ୍ଭ ଶରାସନ ।
ଏଥି ନାହିଁ କିଛି ପାପ କଉଣସି ଭୟ
ତା'ପରେ ଦେଖିବ ଆମ ଯୋଜନାର ଜୟ ।
ସ୍ୱର୍ଗରେ ଚଳିବ ନବ ଯୁଗର ଶାସନ
ଅନ୍ଧକାର ଘୋର ଅସ୍ତ ଯୁଗ ପୁରାତନ ।
କାମରାଜ—ତଥାସ୍ତୁ, କିନ୍ତୁ ଏଥିରୁ ଯଦି ମୁନିବର
ଅନର୍ଥ ବାଢ଼ଇରେ ତେବେ ମୋତେ ରକ୍ଷା କର ।
ନାରଦ— ଅଭୟ ଦେଉଛି ମୁହିଁ କାମରାଜ ବୀର
ଶରେ ପୂର୍ଣ୍ଣ କର ତବ ପୁଷ୍ପର ତୂଣୀର ।
( ଉଭୟେ ପ୍ରସ୍ଥାନ କଲେ )
[ ପ୍ରବେଶ କଲେ ଦୁଇ ଜଣ ଆଧୁନିକା ଦେବୀ ]
ପ୍ରଥମା— ଦେବରାଣୀ, ହେଲା ଆସି ସଭାର ସମୟ
କିନ୍ତୁ ଏବେ ସୁଦ୍ଧା ଶୂନ୍ୟ ଏ ସଭାଳୟ ।
ଶଚୀ— (ଭେନିଟି ବେଗ୍‌ରୁ ଦର୍ପଣ ଓ ପାଉଡର୍ କାଢ଼ି
ନାକରେ ଲଗାଇ)
ସୌଦାମିନୀ ଦେବୀ,
ବହୁ ଯୁଗ ଧରି ଏକ ମଘବାଙ୍କୁ ସେବି
ଅବସନ୍ନ ଦେହ ମନ ମୋର
କ୍ଲାନ୍ତ ହେଲେ ଘନଘୋର

ସ୍ୱର୍ଗର ସାମ୍ରାଜ୍ଞୀ ଥାଇ ପତିପ୍ରେମ ବିନା
ଅବହେଳା ଭୋଗେ ମୁହିଁ ଉପେକ୍ଷିତା ଦୀନା ।
ଲାବଣ୍ୟର ପାରାବାର ଏଇ ମୋର ଦେହ
ସ୍ୱର୍ଗରେ ଉତ୍ତମ ଏହା ଅଟେ ନିଃସନ୍ଦେହ ।
ତଥାପି କାହିଁକି ରମ୍ଭା, ମେନକା, ଉର୍ବଶୀ,
ତିଲୋତ୍ତମା ଇନ୍ଦ୍ର ମନ ହରନ୍ତି ହରଷି ।
ତାଙ୍କ ତୁଳନାରେ ମୁହିଁ କେଉଁ ଗୁଣେ ଊଣା
ଅଥବା ମଘବା ମୋତେ ଭାବନ୍ତି ପୁରୁଣା ।
ପ୍ରତି ରଜନୀରେ ଦେବେ ସୋମରସ ପିଇ
ଅପସରା ନୃତ୍ୟନାଳେ ନିଜକୁ ହରାଇ
ଦିନ ମାସ ରତୁ ବର୍ଷ ଯୁଗ ଧରି
ମାତନ୍ତି ରଙ୍ଗରସେ ଆମକୁ ବିସ୍ମରି ।
କି ପ୍ରତିବିଧାନ ଅଛି ଏଇ ସମସ୍ୟାର
ଜାଣୁ କର ଏବେ ମୋର ଜୀବନର ଭାର ।

ରୋହିଣୀ— ନୃତ୍ୟ ଯଦି ପ୍ରିୟ ଇନ୍ଦ୍ରଙ୍କର
ତେବେ ତୁମେ ନାଚିବା ଅଭ୍ୟାସ କର ।

ଶଚୀ— ଅସଙ୍ଗତ ପରାମର୍ଶ ଦେଉଛୁ ରୋହିଣୀ,
ମୁହିଁ ପରା ଦେବରାଜ ମଘବା ଗୃହିଣୀ
ମୁହିଁ ଯଦି ନାଚେଁ ସଙ୍ଗେ ରମ୍ଭା ମେନକାର
ଇନ୍ଦ୍ରଙ୍କୁ ଓ ମୋତେ ସର୍ବେ କରିବେ ଧିକ୍କାର ।

ରୋହିଣୀ— ନା, ନା, ଆଧୁନିକ ଯୁଗେ ନୃତ୍ୟ ସଭ୍ୟତାର ଅଙ୍ଗ
ହେଲଣି ନାଚିଲେ ତୁମ ମର୍ଯ୍ୟାଦାର ଭଙ୍ଗ

ହେବନାହିଁ, ବଲ୍‌ନାଚେ, ଓ୍ୱାଲ୍‌ଜ୍ ଓ ବାଲେ(ballet)ରେ
ଇନ୍ଦ୍ର ସଙ୍ଗେ ଦେଖି ତନୃତ୍ୟ ପରିକ୍ରମା କଲେ
ଦେବସଭା ମଧ୍ୟେ ସର୍ବେ କରିବେ ବାହାବା
ତୁମ୍ଭ ନବ୍ୟ ରୂପ ଦେଖି ଇନ୍ଦ୍ର ହେବେ ହାବା ।
ରସିକ ଇନ୍ଦ୍ର ହୃଦୟ କଣ୍ଟୁ ଜୟ
କରିବାର ଏକମାତ୍ର ଏହାହିଁ ଉପାୟ ।
ଶଚୀ— ଏ ବୟସେ ନୃତ୍ୟଶିକ୍ଷା କରିବାକୁ ମନ
ନାହିଁ; ବଳ ନାହିଁ; ଜାଣ ପୂର୍ବ ପ୍ରବଚନ
ଅତ ନର୍ଲଜ୍ଜା ଗୀତ ଗାଏ
ଚୋଡ଼ମୁହାଁ ନାଚ ଯାଏ ।
ତେଣୁ କହ କର ମୁଁହି କ ଉପାୟ ଅନ୍ୟ ।
ଇନ୍ଦ୍ର ଦର୍ପ ଭାଙ୍ଗି କର ଏ ଜୀବନ ଧନ୍ୟ ।
ରୋହିଣୀ— ତେବେ ଶୁଣ ମୋର କଥା
ଶଚୀ ଧ୍ରୁବ, ନୂଆ ନୂଆ ଇନ୍ଦ୍ରଙ୍କ ବ୍ୟବସ୍ଥା
ସ୍ୱର୍ଗପୁର ରୀତ, ତେଣୁ ଇନ୍ଦ୍ରଙ୍କୁ ବରଜ
ଅନ୍ୟ ଦେବେ ବର, ଯାକୁ ତୁମର ମରଜ ।
ଶଚୀ— ଛାଡ଼ପତ୍ରର ବିଧାନ ନାହିଁ ସ୍ୱର୍ଗ ପୁରେ ।
ସ୍ୱର୍ଗେ ଧାଡ଼ ନ ଦିଅନ୍ତି ଏ ଯୁଗ ଅସୁରେ ।
ବିଶ୍ୱାମିତ୍ର ମୁନି ପରି ତପସ୍ୟା କଠୋର
ମର୍ତ୍ତ୍ୟେ-କେହି ନ କରନ୍ତି, ତେଣୁ ଦୁଃଖ ମୋର ।
ରୋହିଣୀ— ସ୍ୱର୍ଗ ମଧ୍ୟେ ସବୁ ଦିନ ରହିଲେ ସମାନ
ଜୀବନ ଦୁଃସହ ହେବ, ନୂତନ ବିଧାନ

କରିବା ଏଠାରେ । ଏବେ ଭାରତରେ
ମନ୍ତ୍ରୀମାନେ କାମରାଜ ନବ ଯୋଜନାରେ
ଭଜିଲେଣି ବାନପ୍ରସ୍ଥ । ସ୍ୱର୍ଗପୁରେ ଯଦି
ଛାଡ଼ନ୍ତି ଇନ୍ଦ୍ର, ଶମନ, ସୂର୍ଯ୍ୟ ନିଜ ଗାଦି
ତେବେ ଜାଣ-ସ୍ୱର୍ଗପୁରେ ବିପ୍ଳବ ହୋଇବ
ନବ ଇନ୍ଦ୍ର ଲଭି ତୁମ ଗୌରବ ବଢ଼ିବ ।
ଶଚୀ— କିନ୍ତୁ ସ୍ୱର୍ଗପୁରେ କାହିଁ କାମରାଜ ?
ଦେବ ସଭାରେ ପ୍ରସ୍ତାବ କେ ବାଢ଼ିବ ଆଜ ?
ରୋହିଣୀ— ଭାରତର କାମରାଜ କାଲିକାର ପିଲା
ଏଠି କାମରାଜ କେତେ ବିଭ୍ରାଟ ରଚିଲା ।
ସମ୍ମୋହନ ଶରେ ତାର ଘଟାଇ ବିକାର
ଯଦି କେଉଁ ଦେବ ସଙ୍ଗେ ପତ୍ନୀ ଅନ୍ୟ କାର
ଏବେ ପୁଣି ଯୋଡ଼ି ଦିଏ ପୁଷ୍ପଶରେ ତାର
ଦେବେ ପୁଣି ଭୋଗିବେ ସେ ମଦନ ବିକାର ।
ଇନ୍ଦ୍ର ରୂପେ ଅନ୍ୟ ଦେବେ ବଳିଉଛି ମନ
ଯଦି, କର ତେବେ ସ୍ମରଙ୍କୁ ସ୍ମରଣ ।
ଶଚୀ— ସ୍ୱର୍ଗେ ବିପ୍ଳବର ଏହା ସହଜ ଉପାୟ
ନୂଆ ଇନ୍ଦ୍ର ବରିବି ମୁଁ, କିନ୍ତୁ ହାୟ ହାୟ
ଶୌର୍ଯ୍ୟେ ବୀର୍ଯ୍ୟେ ରୂପେ ଗୁଣେ ଇନ୍ଦ୍ରଙ୍କ ସମାନ
କିଏ ଅଛି ଯାହାଙ୍କୁ ମୁଁ କରିବି ବରଣ ?
ରୋହିଣୀ— ସେଇ ତ ତୁମର ଭ୍ରମ
ଛାଡ଼ ଏବେ ସୌନ୍ଦର୍ଯ୍ୟ ସମ୍ଭ୍ରମ ।

'ସର୍ପା ରୂପବତୀ ଶଚୀ' ଅଛୁ ମାତ୍ର କଥା
ଇନ୍ଦ୍ରଙ୍କ ଲବଣ୍ୟ ତୁମ ବାଇର ସର୍ବଥା ।
ସୌନ୍ଦର୍ଯ୍ୟର ମୋହ ଏତେ ବର ନବ ଦେବ
ଯହିଁ ତୁମ ଅପମାନ, ଉପେକ୍ଷା ନ ହେବ ।

ଶଚୀ— ଛୁଡ଼େଁ ଯଦ ମୋହ ସୌନ୍ଦର୍ଯ୍ୟର
କୁବେରଙ୍କଠାରୁ ଆଜ କଏ ଅଛୁ ବଡ଼ ?
ରକଫେଲର୍ ଓ ଫୋର୍ଡ, ଟାଟା ଓ ବିରଲା
ମର୍ତ୍ତ୍ୟେ ଯାଙ୍କ ପ୍ରତି ସଦା ପ୍ରସନ୍ନ କମଳା ।
ସେମାନଙ୍କଠାରୁ ବଡ଼ ଧନପତି ଆଜ
ତେଣୁ ତ ତାଙ୍କର ନାମ ସ୍ୱର୍ଗେ ରାଜରାଜ ।
ଅବଶ୍ୟ ସେ ରୂପେ ଅସୁନ୍ଦର
କିନ୍ତୁ ଧନ ପୁରୁଷର ପ୍ରକୃତ ସୁନ୍ଦର ।
ଦେବସଭାରେ କୁବେର ନଗ୍ରୁର ଗୃହାଣିରେ
ଗୃହିଁ ଥାନ୍ତି ନିର୍ନିମେଷ ନେତ୍ରେ ମୋତେ ଧୀରେ ।
ଦେବତାରାଜ ହୁଅନ୍ତେ ଯଦ ଧନପତ
ସ୍ୱାଧୀନଭର୍ତ୍ତୃକା ମୁହିଁ ଲଭନ୍ତି ସଦ୍‌ଗତ ।
ଇନ୍ଦ୍ରଙ୍କ ଉପେକ୍ଷା ସଙ୍ଗେ କୁବେର କାମନା
ଜନମାଏ ମନେ ମୋର ଅପୂର୍ବ ବାସନା ।
ସୌନ୍ଦର୍ଯ୍ୟର ଡୋରେ ଅବା ପ୍ରଣୟ ପାଶରେ
ବାନ୍ଧି ରଖନ୍ତି ମୁଁ ତାଙ୍କୁ ପଣନ୍ତି କାନିରେ ।

ରୋହିଣୀ— ଧନ୍ୟା ଦେବରାଣୀ ତୁମେ ଧନ୍ୟା
ଖେଳାଇବ ତୁମେ ଆଶ୍ଚର୍ଯ୍ୟର ବନ୍ୟା

ଯଦି ଏହି ଅଘଟନ ଘଟଇ ସ୍ୱର୍ଗରେ ।

ଶଚୀ— ମୋ ସନ୍ତାନୁଭୂତ ଜେନ ତୁମର ଦୁଃଖରେ ।
ତୁମେ ଅଛ ମୋହଠାରୁ ଅଧିକ ଦୁଃଖିନୀ
ନାହିଁ ଅଭିଶାପେ ହେଲ ଚନ୍ଦ୍ରଙ୍କ ଗୃହିଣୀ ।
ଛବିଶଟି ସପତ୍ନୀ ଛନ୍ତି ତୁମ ପୁରେ
କ୍ଷୟରୋଗୀ ପତିଠାରେ କାମନା ନ ପୁରେ ।
ମାସକର ବିରହ ବେଦନା ପରେ
କଳାହୀନ କ୍ଷୀଣପ୍ରଭ ଚନ୍ଦ୍ରମା ସଙ୍ଗରେ
ରାତି ଯାପନରେ ଯେଉଁ ଦୁଃସହ ବେଦନା
ଭୋଗୁଥିବ ତାହା ମୁହିଁ କରଇ କଳ୍ପନା ।
ତୁମେ କ ଗୃହିଣୀ, ସଖି, ସୂର୍ଯ୍ୟଙ୍କର ପରି
ଶୌର୍ଯ୍ୟଦୀପ୍ତ ଜ୍ୟୋତିଷ୍ମାନ୍ ଦେବତାଙ୍କୁ ବରି
ହୋଇଥାନ୍ତ ଧନ୍ୟ, ଯଦି ଭାଗ୍ୟ ଅନୁକୂଳ
ଅଥବା ମିଳନ୍ତା ଯଦି ସୁଯୋଗ ବିପୁଳ ।

ରୋହିଣୀ—ସୂର୍ଯ୍ୟଦେବଙ୍କ ମନେ ମୁଁ ସରମେ
କେତେ ଯୁଗ ତାହାଙ୍କୁ ମୁଁ ଗୃହିଁଛି ମରମେ ।
କିନ୍ତୁ ସୂର୍ଯ୍ୟ ଭାବେ ଯୋଗ ହେବା ଅସମ୍ଭବ
କେତେ କେ ଦେଖାଏ ଠାଣି ଛାୟା
ସୂର୍ଯ୍ୟପ୍ରିୟା ବୋଲି କୃଷ୍ଣ କାୟା ।
ରୂପେ ଗୁଣେ ଯୋଗ୍ୟତାରେ
ସବୁ ବିଷୟରେ ଛାୟା ମୋହଠାରେ ହାରେ ।

ଅନ୍ୟ ଜନ୍ମ ହେଉଥାନ୍ତା ଯଦି ଦେବୀଙ୍କର
ପରଜନ୍ମେ ବାଞ୍ଛନ୍ତି ମୁଁ ପତି ଢ଼ବାକର
( ଏହି ସମୟରେ ପ୍ରବେଶ କଲେ ଆସ୍ଥର ଧୂଳ ଜଣ ଦେବୀ )

ଶଚୀ— ଓଃ ସ୍ବାହା ଓ ଚପଳ !
ସଭାରେ ଯୋଗ ଦେବାରେ ଏତେ ଅବହେଳା ?
ମହିଳା ସମିତି ଆଜ ଏ ସଚିବାଳୟେ
ବସିବାର ଥିଲ ସାଢ଼େ ସାତଟା ସମୟେ,
କିନ୍ତୁ ଏବେ ବେଳ ପ୍ରାୟ ଆଠ ଘଣ୍ଟା ହେଲ
ଦେବୀମାନେ ଆସିବାକୁ କରୁଛନ୍ତି ହେଳା ।
କୋରମ ଅଭାବେ ସଭା ରହିଲ ସ୍ଥଗିତ
କିନ୍ତୁ ଶୁଣ, ହେଉଥିଲ ଏବେ ଆଲୋଚନା
ଆମର ମଧ୍ୟରେ
ଯୁଗ ଯୁଗ ଧରି ଏଇ ଅମର ଲୋକରେ
ଶଚୀ-ଇନ୍ଦ୍ର, ଛାୟା-ସୂର୍ଯ୍ୟ, ଚନ୍ଦ୍ର ଓ ରୋହିଣୀ
ସ୍ବାହା-ଅଗ୍ନି ବହୁ୍ୟନ୍ୟେବ ପତି ଓ ଗୃହିଣୀ
ଅପରିବର୍ତ୍ତିତ ଚଳେ ବିଧିର ବିଧାନ
ମର୍ତ୍ତ୍ୟ ଜନ୍ମାନ୍ତରେ ନାହିଁ ଲଭେ ପତି ଆନ ।
ତେଣୁ ସେଠି ସୁଖୀ ଥାଏ ଦାମ୍ପତ୍ୟ-ଜୀବନ
ଦାମ୍ପତ୍ୟ ପ୍ରେମ ମାତ୍ରସ ସ୍ବର୍ଗେ ପୁରାତନ ।
କରୁଥିଲୁଁ ଆମେ ଦୁହେଁ ବିପ୍ଳବ କଳ୍ପନା
ପରକୀୟା ପ୍ରେମ ଯଦି କରନ୍ତେ ସାଧନା

ସବେ ଦେବଲୋକେ, ତେବେ ଏକ ଅଭିନବ
ଶୃଙ୍ଖଳା ସ୍ୱର୍ଗରେ ସୃଷ୍ଟି ହୁଅନ୍ତା ବିପ୍ଳବ ।
ସ୍ୱାହା— ମୋହର ମନର କଥା କହିଅଛ ଦେବୀ
ବ୍ୟସ୍ତ ଓ ବିରକ୍ତ ମୁହିଁ, ସଦା ଅଗ୍ନି ସେବି ।
ଅଗ୍ନି ସଙ୍ଗେ ଯେବେ ହେଲା ପ୍ରଥମ ପ୍ରଣୟ
ଥିଲା ତାଙ୍କ ତନୁ ଧୂପ-ସୁବର୍ଗନ୍ଧମୟ ।
ସେ ସୌରଭ, ଶିଖା ରକ୍ତ ନର୍ତ୍ତନ-ଚପଳ
ଦୀପ୍ତି ଦେଖି ମୁଗ୍ଧ ହେଲି, ଦେଲି ବରମାଳ ।
କିନ୍ତୁ ଏବେ ଶ୍ମଶାନର ପୂତିଗନ୍ଧତନୁ
ଅଗ୍ନିଙ୍କୁ ଦେଖିଲେ ଭୟ ଜାଗେ ମୋର ମନୁ ।
ଯବକ୍ଷାର, ଚନ୍ଦ୍ରକରେ ନାନା ରସାୟନେ
ଦୁର୍ଗନ୍ଧ ଶରୀର ଦେଖି, ଘୃଣା ଜାଗେ ମନେ ।
'ଅଗ୍ନି ପ୍ରେମେ ସ୍ୱାହା' କହେଁ ଇଚ୍ଛା ହୁଏ ମୋର
ଛିଣ୍ଡାନ୍ତି ବନ୍ଧନ-ଯୁଗ-ଅଗ୍ନି-ପ୍ରେମ-ଡୋର ।
ଶଚୀ— ତେବେ କହ ସଖୀ
ଚିତ୍ତରେ ଦ୍ୱିଧା ନ ରଖି
କେଉଁ ଦେବ ଅଙ୍କଲକ୍ଷ୍ମୀ ହୋଇବାକୁ ମନ
ଯଦି ଅଗ୍ନି ଦେବତାଙ୍କୁ କରନ୍ତ ବର୍ଜନ ।
ସ୍ୱାହା— ଜଳି ପୋଡ଼ି ଏତେ ଦିନ ଗଲା ଏ ଜୀବନ
ଶୀତଳ ଜଳପତିଙ୍କୁ ଚାହୁଁଛି ମୋ ମନ
ପ୍ରଶାନ୍ତ ମହାସାଗରେ ବରୁଣଙ୍କ ସଙ୍ଗେ—
ସ୍ୱପ୍ନ ଦେଖେଁ—ଜଳକେଳି କରୁଥାନ୍ତି ରଙ୍ଗେ ।

ଅଥବା ଅତଳାନ୍ତକ ଅତଳ ସାଗରେ
ମୁକ୍ତା ଆହରନ୍ତ ମୁହିଁ ବରୁଣ ସଙ୍ଗରେ ।
ଚପଳ— ମୁହିଁ ମଧ୍ୟ କାମରୂପ ମେଘଧୂମ ଦୋଳ
ମଧ୍ୟେ ବିଦ୍ୟୁତ୍ ରୂପେ ରହି ହେଉଥିଲି ଭୋଳ ।
କିନ୍ତୁ ଏବେ ଦୀପ ପରି ଲଣ୍ଠନ ପରି
ସ୍ନିଗ୍ଧ ସ୍ଥିର କାନ୍ତ ହୋଇ ରହନ୍ତି ବିଚରି ।
ଚନ୍ଦ୍ର ସଙ୍ଗେ ଚନ୍ଦ୍ର ପରି ରଜନୀ ଆଲୋକେ
ସ୍ନିଗ୍ଧ କରନ୍ତି ରଜନୀ, ସ୍ୱର୍ଗ ମର୍ତ୍ତ୍ୟ ଲୋକେ ।
(ହଠାତ୍ ଟେଲିଫୋନ୍ ବାଜି ଉଠିଲା)
ଶଚୀ— (ଟେଲିଫୋନ୍ ଉଠାଇ)
ହେଲୋ, କିଏ କହୁଛ ତୁମେ ? ତୁମେ କାମରାଜ ?
ଏବେ ବସି ଅଛୁ ସଭା । ବେଳ ନାହିଁ ଆଜ ।
କରିବ ଡିଙ୍ଗ୍ କେତେବେଳେ କାଲି
ଚଗଲିଆ କଥା ତୁମ ଖାଲି ।
× × × ×
କଣ ଜରୁରୀ କଥା ?
ପୁଣି ଗ୍ରେଟ କଥା ?
କଣ ? ପୂର୍ଣ୍ଣ ହେବ ଆମର କାମନା ?
ଚଉଦର ଏକ ଏକ ନୂଆ ପାଗଳାମି
କାଲିଠାରୁ ଧନପତି ହେବେ ସ୍ୱର୍ଗ ସ୍ୱାମୀ ?
ଅସମ୍ଭବ । ସୂର୍ଯ୍ୟ ସଙ୍ଗେ କରିବେ ବିହାର
ବେହିଣୀ ସାଙ୍ଗରେ ? ଅସମ୍ଭବ ।

ଭଆଇବ ସ୍ୱର୍ଗପୁରେ ନବୀନ ବିପ୍ଳବ ?
ମାଇ ଗଡ୍ (My god) ଲୁଚି ଲୁଚି ବାଜେ ଗପମାନ
ଶୁଣିବାକୁ ଦେବାଙ୍କର; ଗୁପ୍ତେ ପାତ କାନ
ଅଭ୍ୟାସ ନ ଗଲା ତୁମ ।
ପଞ୍ଚଶରୁଂ କେତ୍ତୁଣ୍ଡ କୁସୁମ
ପ୍ରୟୋଗ କରିବ ମୋର ଅଙ୍ଗେ ପୁଷ୍ପଧନୁ ?
ତୁମେ କଣ କହୁଛ ଅତନୁ ?
ଆଇଡଆ ବାହାରିଛି ନାରଦଙ୍କ ମନୁ ?
ଏ କି ନୂଆ ଦେବ କୁଟ ଭିଆଇଛ ତୁମ୍ଭେ
ମୁଁ ପତ୍ନୀରେ ଆଜି କଣ ଏପ୍ରିଲ୍ ପଡ଼ିଲା ନୁହେଁ ?
ତୁମେ ଦୁଷ୍ଟଙ୍କର ରଜା, ଦେବର୍ଷି ନାରଦ
କଲି ହୁଣ୍ଡା, ମିଛି ଦେଉଁ ପାତିଅଛ ଫାନ୍ଦ
ତୁମ୍ଭେ ଦେଖୁଥିବ ମଜା, ଦହଗଞ୍ଜ ଆମେ
ହେଉଥିବୁଁ ସ୍ୱର୍ଗ ଧାମେ ?
ଆମର ଉତ୍ସଇ ଥାଅ, ଏତେଦୂର ତୁମେ
ନେବ—କଏ ଭାବିଥିଲା ଏଇ ସ୍ୱର୍ଗ ଧାମେ ।
ରଙ୍ଗରସ କଳଙ୍କର ରୂପ ଯଦି ଧରେ
କି ଯଶ ଲଭିବ ତୁମ୍ଭେ ଅମର ଧାମରେ ।
[ଟେଲିଫୋନ୍ ଥୋଇ ଦେଇ ମୁହଁ ଶୁଖାଇ ସମସ୍ତେ
ମୁଣ୍ଡରେ ହାତ ମାରିଲେ ।]

—ଯବନିକା—

## —ଦୃଶ୍ୟାନ୍ତର—

ତହିଁ ଆର ଦିନ । ଦେବ ସଭା ବସିଛି । ମଝିରେ ଦୁଇଟି ସିଂହାସନ ଶୂନ୍ୟ ପଡ଼ିଛି । ଉଭୟ ଆଡ଼େ ଅନେକ ଚୌକି ପଡ଼ିଛି । ବସିଛନ୍ତି ସୂର୍ଯ୍ୟ, ଚନ୍ଦ୍ର, ଯମ, ବରୁଣ, ଅଗ୍ନି ଆଦି । ସଭା ମଝିରେ ଉର୍ବଶୀ ଓ ଗନ୍ଧର୍ବ ଚିତ୍ରରଥଙ୍କ ଦ୍ୱୈତନୃତ୍ୟ ଚାଲିଛି । ଇନ୍ଦ୍ର ତବଲା ବଜାଉଛନ୍ତି । ସମସ୍ତଙ୍କର ମୁହଁରେ ଅସ୍ୱସ୍ତିର ଓ ଅନ୍ୟମନସ୍କତାର ଚିହ୍ନ । ନୃତ୍ୟ ଶେଷ ହେଲା ମାତ୍ରେ ସୂର୍ଯ୍ୟ ଉଠି ପଡ଼ି ଇତସ୍ତତଃ ପଦଚାରଣା କଲେ ବଡ଼ଲାଟ ଭାବରେ । ତାଙ୍କ ମୁଣ୍ଡରେ ଟୋପିଏ ମୁକୁଟରୁ ଆଲୋକ ବାହାରୁଛି ।

ସୂର୍ଯ୍ୟ— ଏହା ନାରଦ ମାର୍କା ବିପ୍ଳବ ?
ନା କାମରାଜଙ୍କ ବିପ୍ଳବ ?
ଆଜଠାରୁ ସ୍ୱର୍ଗରେ କି ହେବ ନାସ୍ତିରାଜ ?
କ୍ଳୀବ ଆଜ ସ୍ୱର୍ଗପୁରେ ଦେବତା ସମାଜ ?
ଦେବତାଙ୍କ ଜ୍ୟେଷ୍ଠ ମୁହିଁ, ତେଜସ୍ୱୀ ତପନ
ଇନ୍ଦ୍ରଠାରୁ ବଡ଼ ବଂଶେ, ଏବେ ମୁଁ ଜୀବନ ।
ସ୍ୱର୍ଗେ ରାଜା ହେବା ଦାବୀ ପ୍ରଥମ ମୋହର
ସେ ପଦ କୁବେର ନେଲା ଶଚୀ ସଙ୍ଗେ ହର ।

କାହିଁ ରାଜା ରାମଚନ୍ଦ୍ର ଭଣ୍ଡାର ରସିଆଁ ?
କାହିଁ ବଜ୍ରଧାରୀ କାହିଁ ଶଚୀବର ମିଆଁ
କୁତ୍ସିତ କୁବେର ରାଜା ପ୍ରକୃତ କୃପଣ ।
ଦୁର୍ଭାଗରେ ପଡ଼ି ଶଚୀ ତାହାଙ୍କୁ ବରଣ
କରନ୍ତୁ ବୋଲି ରାଜା ହୋଇବ କୁବେର,
କେଉଁ ନ୍ୟାୟ ଏହା ? ଅବା ଦେଇ ଲାଞ୍ଚ ଢେର
ତୋଷିଅଛି ଶଚୀଙ୍କର ମନ ଧନପତି ?
ଏଥିରେ ତ ଦେବଲୋକ ଲଭିବ ଦୁର୍ଗତି ।
ପୂର୍ବକାଳେ ରାଜା ହେଉଥିଲେ ବାଛାବାଛି
ଯା ମୁଣ୍ଡେ ସୁନା କଳଶ ଢାଳୁଥିଲା ହାତୀ ।
ଏବେ ଗଣତନ୍ତ୍ର ଯୁଗେ ଚଳିବ କି ତାହା
ରାଜା ହୋଇବ ନୋହିଲେ ବହୁମତ ଯାହା ?
ଭୋଟରେ କୁବେର ଯଦି ହୋଇଥାନ୍ତା ରାଜା
ତୁମ୍ଭଆଡ଼େ ବାଜୁଥାନ୍ତା ତା ବିଜୟ ବାଜା
କାମରାଜ 'ନାରଦଙ୍କ ଯୋଜନାର ଫଳ
ଏହା, ମୁହିଁ ଏଥି କିଛି ଦେଖୁନାହିଁ ଭଲ ।
ତେଣୁ ଆସ ଦେବଗଣ ବିଦ୍ରୋହ କରିବା
ଦସ୍ତଖତ ସଂଗ୍ରହରେ ଅନ୍ୟକୁ ବରିବା
ଦେବରାଜ ରୂପେ, ମୁହିଁ ପ୍ରାର୍ଥୀ ଏଥିପାଇଁ
ଦେବ ପୁରେ ମୋ ସମାନ ମାନ୍ୟଗଣ୍ୟ କାହିଁ ?
ହେ ଇନ୍ଦ୍ର, ଚନ୍ଦ୍ର, ବରୁଣ, ଆହେ ଅଗ୍ନି, ଯମ
ପରିସ୍ଥିତି ବୁଝି ତୁମେ, ଏପରି ଉଦ୍ୟମ ?

ଇନ୍ଦ୍ର— କିଂକର୍ତ୍ତବ୍ୟମୂଢ଼ ଆମେ ଦେଖି ଏ ସୁଆଙ୍ଗ
କୁବେର ହୋଇଲେ ରାଜା ଲଭି ଶଚୀ ସାଙ୍ଗ ।
କୁବେରଙ୍କୁ ରାଜା ବୋଲି ମାନିବେ କି ଦେବେ ?
ତୁମେ ପ୍ରାର୍ଥୀ ହେଲେ ସର୍ବେ ଦସ୍ତଖତ ଦେବେ ।
କିନ୍ତୁ ଦେଖ ଚଳାଉଛି କୁବେର ରାଜତ୍ୱ
ଯଦି ପ୍ରକାଶିତ ହୁଏ ତାଙ୍କ ଅଯୋଗ୍ୟତ୍ୱ
ମନକୁ ଓହରିଯିବେ ରାଜ୍ୟରୁ କୁବେର ।
ତୁମ ପକ୍ଷେ ହେବ ସେତେବେଳେ ଦସ୍ତଖତ ଢେର ।

(ଏହି ସମୟରେ ପ୍ରବେଶ କଲେ ଶଚୀ ଓ କୁବେର ଏବଂ ମଞ୍ଚରେ ଥିବା ଦୁଇ ସିଂହାସନରେ ବସିଲେ । ପୁଣି ଥରେ ଆରମ୍ଭ ହେଲା ଉର୍ବଶୀ ଓ ଚନ୍ଦ୍ରସେନଙ୍କର ନୃତ୍ୟ । ନୃତ୍ୟରେ କିନ୍ତୁ କାହାର ମନ ନାହିଁ । ସମସ୍ତେ ଅଧୋମୁଖ)

କୁବେର—[ନୃତ୍ୟଶେଷରେ] ନୃତ୍ୟ ପାଇଁ ଯେତେ ଛନ୍ତି ରମ୍ଭା ତିଲୋତ୍ତମା
ଚନ୍ଦ୍ରସେନ ପାନ୍ତି କେତେ ମାସିକ ଦରମା ?
ନୃତ୍ୟଗୀତ ସୋମରସେ ନୁହେଁ ମୁଁ ରସିକ
କହ ଚନ୍ଦ୍ରଗୁପ୍ତ ଏଥି ଖରଚ ମାସିକ ?

ଚନ୍ଦ୍ରଗୁପ୍ତ— ସୋମରସେ ଦଶଲକ୍ଷ ପୋଷାକରେ ଲକ୍ଷ
ଅପ୍ସରାଙ୍କ ବେତନରେ ପଚାଅଶୀ ଲକ୍ଷ !
ମର୍ଦ୍ଦଳିଆ, ତବଲଚି ବୀଣାବାଦ୍ୟକାର
ମାସକୁ ବାଇଶ ଲକ୍ଷ ଅନ୍ୟ କଳାକାର ।
ପାନବଡ଼ି ସିଗାରେଟ୍ ହଜାରେ ମାସିକ
ପାଞ୍ଚଲକ୍ଷ ନେଉଛନ୍ତି ଶିଳ୍ପୀ ସାମୟିକ ।

'କୋଟିଏ ପଚଶ ଲକ୍ଷ ଉପରେ ହଜାରେ
ଗାଏ ମୋଟ ଖର୍ଚ୍ଚ ମାସେ ଏ ଦେବ ସଭରେ ।
କୁବେର – ବର୍ଷକୁ ପନ୍ଦର କୋଟି ବାଅର ହଜାର
କେବଳ ନାଚରେ ଖର୍ଚ୍ଚ ଏ ଦେବ ସଭର ?
ଧିକ ଦେବଗଣ, ଦେଖ ଏତକ ଟଙ୍କାରେ
ସୋମରସ କାରଖାନା ନୂଆ ଖୋଲପାରେ
ପ୍ରତିବର୍ଷ, ପାଉଡର ଏସେନ୍ସ୍ ଫେକ୍ଟରି
ପଞ୍ଚ ବାର୍ଷିକ ଯୋଜନା ପ୍ରଚଳନ କରି
ଟେରେଲିନ୍ କାରଖାନା, ଅମୃତ ଭଣ୍ଡାର,
ଅପ୍ସରଙ୍କ ପକ୍ଷ, ଯାହା ନିତ୍ୟ ବ୍ୟବହାର
ହୁଏ ସ୍ୱର୍ଗପୁରେ, ପୁଣି ପୁଷ୍ପକ ବିମାନ
ସହସ୍ର ସଂଖ୍ୟାରେ ଆମେ କରିବା ନିର୍ମାଣ ।
ଲକ୍ଷଭୋଲ୍ଟ ଅପବ୍ୟୟ ଏକ ବଜ୍ରପାତେ
ସୂର୍ଯ୍ୟତେଜ ଅପବ୍ୟୟ ହୁଏ ଦିନେ ରାତେ ।
ଅଯୁତ ଅର୍ବ କେଲରି ତାପ ସୂର୍ଯ୍ୟଙ୍କର
ଅପଚୟ ହୁଏ, ଯଦି ତାହା ବ୍ୟବହାର
କରିଯାନ୍ତା, କାରଖାନା ଚାଲୁ କରିବାରେ
ଅଳଯୁଆ ନ ଆନ୍ତେ କେ ଏ ଦେବ ସଭରେ ।
ପ୍ରତି ଦେବ ଦେବୀ ପାଇଁ ପୁଷ୍ପକ ବିମାନ
ପ୍ରତ୍ୟହ ଏକ କଳଶ ସୋମରସ ପାନ
ଅମୃତ କଳଶ ଏକ ଭୋଜନ ନିମିତ୍ତ
ତଦ୍ଧିଁ ବାହାରେ ଯଥେଷ୍ଟ ହାତେ ଥିବ ବିତ୍ତ ।

ଜୀବନର ମାନବୃଦ୍ଧି ମୁହିଁ ଦେବଲୋକେ
ଗୃହେଁ,ଏଠି କେହି ଥାନ୍ତୁ ନାହିଁ ରୋଗେ ଶୋକେ ।
ଶଚୀ— ଏବେ ଦେନେ ସ୍ୱର୍ଗପୁରେ ନବୀନ ବିଧାନ
କରିଅଛ ଦେବରାଜ, ତୁମେ ବୁଦ୍ଧିମାନ ।
ଜୀବନର ମାନଦଣ୍ଡ ମର୍ତ୍ତ୍ୟରେ ଅଧିକ
ହୋଇଅଛି, ତେଣୁ ସେଠି ସମସ୍ତ ରସିକ ।
ମୃତ୍ୟୁ ପରେ ସ୍ୱର୍ଗପୁରେ ଆସିବାକୁ କେହି
ନ ଚାହାନ୍ତି, ତେଣୁ ଶୁଷ୍କ ସ୍ୱର୍ଗ ପୁରୀ ଏହି ।
ସ୍ୱର୍ଗରୁ ପୃଥିବୀ ଭଲ, ଭଲ ଜାହାନ୍ନାମ
କାରଣ ଏଠାରେ କିଛି ଜନହିତର କାମ
ଯୋଜନା ତ ଦୂରେ ଥାଉ, ଆଜଯାଏ ଦେଖି
କଳ୍ପନା ନ ଥିଲେ କରି, ଏବେ ତ ନିଚ୍ଚିରଖ
ସ୍ୱର୍ଗ ପୁଣି ହେବ ଲୋଭନୀୟ
ସର୍ବୋତ୍କୃଷ୍ଟ ଖାଦ୍ୟ ଓ ପାନୀୟ
ମିଳିବ ନୂଆ ଯୋଜନା କାର୍ଯ୍ୟକାରୀ ହେଲେ
ଆଉ କେହି ନ ମାରିବା ନାଚ ଆଉ ଖେଳେ ।
କୁବେର— ସେଥିପାଇଁ ଶୁଣ ଏବେ ଘୋଷଣା ମୋହର
ପ୍ରାପ୍ତି ସଂରକ୍ଷଣ ହେବ ଏବେ ସୂର୍ଯ୍ୟଙ୍କର ।
ହେ ଆଦିତ୍ୟ, ତୁମ୍ଭ ନେଜ ଲକ୍ଷ ରଶ୍ମି ସଙ୍ଗେ
ନେଇ ରହେ ବିହରିବ ରୋହିଣୀଙ୍କ ସଙ୍ଗେ ।
ରୋହିଣୀ-କାମନା ଏହା ନାରଦ-ବିଧାନ
ପାଳିଣ ବିଶ୍ରାମ ଲଭ ପ୍ରାପ୍ତି କରି ମ୍ଳାନ ।

ସ୍ୱର୍ଗ ହେବ ମର୍ତ୍ତ୍ୟସ୍ଥାନ୍ ତୁମରି ତ୍ୟାଗରେ
ତୁମର ବଳକା ଶକ୍ତି ନୂତନ ଯୁଗରେ
କାରଖାନାମାନଙ୍କେ ସେ ହୋଇବ ଇନ୍ଧନ
କେତେ ଯନ୍ତ୍ର ବାହାରିବ ତହିଁରୁ ନୂତନ ।

ସୂର୍ଯ୍ୟ— କିନ୍ତୁ ଦେବରାଜ.................

କୁବେର— (ବାଧା ଦେଇ) ମୁହିଁ ଶୁଣିବାକୁ କାହିଁ
ରହେଁ ନାହିଁ, ତୁମ ଜ୍ୟୋତି ଅପଚୟ, ଛି, ଛି
ବାଧେ ମୋତେ, ଏ ନିଷ୍ପତ୍ତି କରିଅଛି ମୁହିଁ
ତେଣୁ ଏଥି ସ୍ୱକ୍ରାନ୍ତର୍କେ ଅବକାଶ ନାହିଁ ।

ଯମ— (ଉତ୍କଣ୍ଠିତ ହୋଇ) କିନ୍ତୁ......

କୁବେର— (ପୁଣି ବାଧା ଦେଇ) ଯମରାଜ, ଶୁଣୁଅଛି ତୁମ ବିରୁଦ୍ଧରେ
ଅଭିଯୋଗ । ଶୁଣାଯାଏ ବହୁ ନରକରେ ।
ମର୍ତ୍ତ୍ୟପୁରେ ବନ୍ଦୀଗୃହ ହୋଇଛି ସଂସ୍କାର
ସେଠାରେ ତ ହେଉ ନାହିଁ ଆଉ ଅତ୍ୟାଚାର ।
ଚୋର, ଡକାଏତ, ଖୁନି, ଠକ, ଦଗାବାଜ
ଆରାମରେ ରହୁଛନ୍ତି ବନ୍ଦୀ ସେଠି ଆଜ ।
ଚଳନ୍ତି ଭୋଜନ, ଖେଳ, ରେଡିଓ ସଙ୍ଗୀତ
ଅଭିନୟ ପ୍ରଦର୍ଶନ କରି ହୋନ୍ତି ପ୍ରୀତ ।
ସେମାନେ ନରକେ ଆସି ଭୋଗନ୍ତି ଯନ୍ତ୍ରଣା,
ଅନଳେ ଦହନ, ଶୂଳି ଉପରେ ନିର୍ଯ୍ୟାତନା ।
ଅଙ୍ଗଚ୍ଛେଦେ ରକ୍ତସ୍ରାବ, ଯାତନା ଶାରୀରିକ
ଦ୍ୱିତୀୟିକା ଭୋଗୁଛନ୍ତି ନାନା ମାନସିକ ।

ଭଲ ନୁହେ ଏହି ସବୁ । ଦଣ୍ଡ ଶାରୀରକ
ନର୍କ ଦୂର କରି, ଦେବା ସୁବିଧା ଅଧିକ ।

ଯମ— ଶୁଣ ଦେବରାଜ, ତେବେ ନେଜ ମୋ ଇସ୍ତଫା
ଧର୍ମରାଜ ମୁହିଁ, ସବୁ ବୁଝାଉଛି ସଫା ।
ମର୍ତ୍ତ୍ୟରେ ଅବସ୍ଥା ଭିନ୍ନ, ସେଠି ଭେଦ ନାହିଁ
ନେତା, ଚୋର ମଧ୍ୟେ ଭେଦ ଅବକାଶ କାହିଁ ?
ଭୋଟ ପାଇଁ ମନ୍ତ୍ରୀ ହେବା ଆକାଙ୍‌କ୍ଷା ଯାହାର
ଅନ୍ତତଃ ମାସେ ପାଇଁ ସେ ଲଙ୍ଘେ ଜେଲ୍‌ଦ୍ୱାର ।
ଅଣାଯାନ୍ତି ତହିଁ ମଧ୍ୟେ ଡକାୟତ ଚୋର
ଜେଲରଙ୍କ ମନେ ସଦା ଲାଗେ ଶଙ୍କା ଘୋର ।
ବନ୍ଦୀ ମଧ୍ୟୁ ଭବିଷ୍ୟତେ କିଏ ମନ୍ତ୍ରୀ ହେବ ?
ଦେଶପ୍ରେମୀ, ଚୋର, ନେତା, ଠକ ଭେଦଭାବ
ଜଣାପଡ଼େ ନାହିଁ ମର୍ତ୍ତ୍ୟେ, ସେଠାର ବିଧାନ,
ତେଣୁ, ବନ୍ଦୀଗୃହେ ସର୍ବେ ମନ୍ତ୍ରୀର ସମ୍ମାନ
ଲଭନ୍ତି, ଲଭନ୍ତି ସର୍ବେ ଭଣଜା ଆଦର
ଏଠାରେ ଉଚିତ ଦଣ୍ଡ ହୁଅଇ ପାପର ।
ଏଠାରେ ଯୋଗ୍ୟତା ଦେବ-ରାଜ ପଦ ପାଇଁ
ନର୍କେ ଦୁଇମାସ ବାସ ଲୋଡ଼ା ହୁଏ ନାହିଁ ।
କୁମ୍ଭୀପାକ, ରଉରବ ଆଦି ନର୍କମାନ
ପାପ ପ୍ରାୟଶ୍ଚିତ୍ତ ପାଇଁ ହୋଇଛି ବିଧାନ ।
ମଦ୍ୟପ ଚୋରବେ ସଡ଼େ ନର୍କରେ ଲମ୍ପଟ ।

କୁବେର— ରହ ଯମ, ମୋତେ କହ ନ କର କପଟ
ମର୍ତ୍ତ୍ୟ ମଦ୍ୟପାନ ପାପ, ସ୍ୱର୍ଗେ ସୋମପାନ
ତାଙ୍କୁ କିଆଁ ହୁଏ ନାହିଁ ଦଣ୍ଡର ବିଧାନ ।
ଚନ୍ଦ୍ର ଅପସରା ସଙ୍ଗେ କଲେହେଁ ବିହାର
ଦେବତା ନାମରେ ଦୋଷ ନ ହୁଏ ବିଚାର ।
ଯମ— ସ୍ୱର୍ଗରେ ଦୁଷ୍କୃତ କଲେ ହୁଏ ପୁଣ୍ୟକ୍ଷୟ
କ୍ଷୀଣପୁଣ୍ୟ ଦେବ ଯାଏ ସ୍ୱର୍ଗରୁ ବିଦାୟ ।
କିନ୍ତୁ ମୁଁ ଏବେ ଏହି ତତ୍ତ୍ୱର ବିଚାର
ତେଣୁ କାହାକୁ ଦେବ ଏ ନରକର ଭାର ।
ବିଦାୟ ନେଉଛି ମୁହିଁ.........

( ପ୍ରସ୍ଥାନ )

କୁବେର— ନରକର ଜମା
ନାଇଁ ଚିତ୍ରଗୁପ୍ତ ଖଙ୍କୁ ଯମଙ୍କ ବଡ଼ିମା
ସବୁ ଭଙ୍ଗ ହେଲା ଏବେ ।......
( ଶଚୀ ଓ କୁବେର ଆସନରୁ ଉଠି ପ୍ରସ୍ଥାନ କଲେ )
ସୂର୍ଯ୍ୟ— ଧନ୍ୟ ଯମ,
କି ଥିଲା ଏ ସ୍ୱର୍ଗ କି ହୋଇଛି ଆଜ
ଶୁଣ ଶୁଣ ଦେବତା ସମାଜ
ସଙ୍କୁଚିତ କରେଁ ଯଦି ମୋ ତାପନ କର
ଧାନ ବ୍ରୀହିରେ କ୍ଷେତ୍ରେ ହୋଇବେ ପ୍ରବଳ ।
ପଶୁପକ୍ଷୀ ନରନାରୀ ସ୍ଥାବର ଜଙ୍ଗମ
ମୋ କିରଣେ କରୁଛନ୍ତି ଜୀବନ ଧାରଣ

ସଦାଗରି ହେଲେ ସୃଷ୍ଟି ହୋଇବ ପ୍ରଳୟ,
କୁବେର ବିପୁଳ ଅର୍ଥ କରିବେ ସଞ୍ଚୟ ।
ଖାଲି କଳ କାରଖାନା ସୃଷ୍ଟି ନଷ୍ଟ ହେଲେ
ଜୀବନ ମାନ କାହାର ବଢ଼ାଇବ ହେଲେ ।
ସବୁ ଜୀବଜନ୍ତୁ ମଲେ ଏକାକୀ କୁବେର
ସନ୍ତୁଷ୍ଟ ହୋଇବେ ଏକା ସଞ୍ଚି ଅର୍ଥ ଢେର ।
ତେଣେ ଦେଖ ଯମସ୍ଥଳେ ହୋଇଛି ଆଦେଶ
ପାପିଷ୍ଠ ଅଧମେ ସୁଦ୍ଧା ଦେବେ ନାହିଁ କ୍ଲେଶ ?
ଆଜ ପୁଣ୍ୟ ଅର୍ଜିବାର କିସ ପ୍ରୟୋଜନ
ନର୍କ ସଙ୍ଗେ ସ୍ୱର୍ଗ ଏବେ ହୋଇବ ସମାନ ।
ମଦ୍ୟପାନ ଲମ୍ପଟତା ସ୍ୱୈର ଉଦ୍ଧାପୃତ
କୁବେର ରାଜତ୍ୱେ ହେବ ଲୋକପ୍ରିୟ ଅତି ।
ନାରଦଙ୍କ ଆଶୀର୍ବାଦେ ଶଚୀଙ୍କ ପ୍ରସାଦେ
ରାଜ୍ୟ ଲଭିଛନ୍ତି ଯେଣୁ ଅତି ନିର୍ବିବାଦେ ।
ସ୍ୱୈରିଣୀ ସଭ୍ୟତା ତେଣୁ କରନ୍ତି ପ୍ରସାର
ବଢ଼ିବ ସୋମର ସଙ୍ଗେ ସୁରା ବ୍ୟବହାର ।
କୁବେର ବରୁଣଙ୍କ ଯଦି ଅତି ଶୀଘ୍ର ଆମେ
ଅବିଶ୍ୱାସର ପ୍ରସ୍ତାବ ଆଣୁ ସ୍ୱର୍ଗଧାମେ
କାଞ୍ଚିତ ପାରିବା ରୋଧି ସ୍ୱର୍ଗର ଦୁର୍ଗତି
ନ ହେଲେ ଆମର ମଧ୍ୟ ହେବ ନର୍କଗତି ।
ସ୍ୱର୍ଗ ଓ ନରକ ମଧ୍ୟେ ଯଦି କିଛି ଭେଦ
ନ ରହେ ସମସ୍ତେ ଆମେ ଲଭିବା ନିର୍ବେଦ ।

ତେଣୁ ଦେବଗଣ, ଜାଗ ବେଳ ଥାଉଁ ଥାଉଁ
ଦସ୍ତଖତ ଅଭିଯାନ ଆଜଠାରୁ ହେଉ ।
କୁବେରଙ୍କୁ ଅବିଶ୍ୱାସ ପ୍ରସ୍ତାବଟି ପାସ୍
କରାଇ ପାରିଲେ ସଟବ ହୋଇବା ସାବାସ୍ ।
ତେଣୁ ଆସ ଇନ୍ଦ୍ର, ଅଗ୍ନି, ବରୁଣ ଓ ଯମ
ଫେରାଇ ଆଣିବା ପୂର୍ବ ଶାସନ ନିୟମ ।
ନବ ଦେବରାଜ ସ୍ୱର୍ଗେ ନିର୍ବାଚିତ କରି
ଜନନ୍ତ କରିବା ଆମେ ଏହି ଦେବପୁରୀ ।
[ ସ୍ୱର୍ଣ୍ଣ କାଗଜ ଓ ଫାଉଣ୍ଟେନ୍ ପେନ୍ ଇନ୍ଦ୍ରଙ୍କ ଆଡ଼କୁ ବଢ଼ାଇଦେଲେ । ]

—ଯବନିକା ପତନ—

